# ମହୁ ମହଲ



ଡଃ ବିଦ୍ୟାଧର ପାଢ଼ୀ

# ମହୁମହଲ

ପହିଲି ଫଗୁଣମାସର ସୁନ୍ଦର ମଧୁର ସକାଳ । ମୁକୁତା-ମାଳୀ ଝରଣା କୂଳର ଶାଳବଣରେ ମଉଛବ ଲାଗିଛି । ସୂର୍ଯ୍ୟଦେବ ହସି ହସି ଉଦାରଭାବେ ସୁନାର କିରଣ ପସରା ବାଣ୍ଟି ଦେଇଛନ୍ତି । ଝରଣାର ଢେଉଢେଉକା ପାଣି, ଗଛର ହଳାହଳକା କଅଁଳ ପତର, ଉଡ଼ି ଉଡ଼ି ବୁଲୁଥିବା ପ୍ରଜାପତି ଡେଣା ଆଦି ସବୁ ଚିଜରେ ସୁନା



ଛିଟିକା ଲାଗିଯାଇଛି । ଏପରିକି ଭୂଇଁ ଉପରେ ଝରି ପଡ଼ିଥିବା ଶୁଖିଲା ପତ୍ରର କାକରବିନ୍ଦୁରେ କିରଣର କୁହୁକ ଲାଗିଛି । ନୂଆ ବାହା ହୋଇଥିବା ବୋହୂପରି

ଦକ୍ଷିଣା ପବନ ଧୀରେ ଧୀରେ ଲାଜେଇ ବହୁଛି । ଚମତ୍କାର ପରିବେଶ, ଅନୁପମ ମନୋହର ।

ବନସ୍ଥଳୀରେ ଜୀବନରଙ୍ଗ ଲାଗିଛି । ଜୀବନ-ଢେଉର ବେଗ ବଢ଼ିଛି । ହରିଣଛୁଆଟି ମାଆର ଆକଟ ନ ମାନି ଶିଆଡ଼ିଲଟା ଗହଳିରୁ ବାହାରି କଅଁଳ ହଳଦୀଗରଗର ଖରାରେ ଲାଙ୍ଗୁଡେକି ଦଉଡ଼ୁଛି । ଓଲଟି ଆସି ପୁଣି ଦଉଡ଼ୁଛି । ତା'ର ତରକା ନଜର ପଡ଼ିଲା ପାଖର ଗୋଟିଏ ଛୋଟ ବୁଦା ଉପରେ । ସେଥିରେ ରାତି-ଆକାଶର ତରାଭଳି ଫୁଲ ଫୁଟିଛି । ଫୁଲ ଉପରେ ଏକ ବହୁ ରଙ୍ଗମଖା ପ୍ରଜାପତି । ହରିଣ ଛୁଆଟିର ଶରଧା ହେଲା, ତାରି ସାଙ୍ଗ ହେବ । ସେ ଥମିଯାଇ ଜିଭ ବଢ଼ଉଛି । ପ୍ରଜାପତିଟି ତରକି ଉଡ଼ିଗଲା । ପ୍ରଜାପତି ଉଡ଼ୁଛି, ପଡ଼ୁଛି, ପୁଣି ଉଡ଼ୁଛି । ମିରିଗ ଛୁଆଟି ତାରି ପଛରେ ଡେଇଁ କୁଦି ଆନନ୍ଦରେ ନାଚୁଛି । ମା ଡାକ ନ ମାନି ଦୂରକୁ ଦୂରକୁ ଡେଇଁ ଯାଉଛି । ଗଛ ଡାଳରୁ ହୁକୁ ହୁକୁ କରି ହଳଦୀବସନ୍ତ ପକ୍ଷୀଟିଏ ତାଙ୍କରି ଆଡ଼କୁ ଉଡ଼ି ଆସୁଛି । ଶଶାଟିଏ ତରତର ହୋଇ ପଳାଇ ଯାଉଛି ।



ଗୋଟିଏ ବିଶାଳ ବୁଢ଼ା ଶାଳଗଛ । ସେଇଠି ନାଚ ଗୀତ ଲାଗିଛି । ଗୀତ ବା ନାଚର ଭାବ ଲୟ ଛନ୍ଦ ସ୍ପଷ୍ଟ ନୁହେଁ । କାରଣ ସେହି ମେଳି-ନାଚରେ ପାଞ୍ଚ ବା ଦଶ ପଚିଶ ମାତ୍ର ନାହାନ୍ତି; ନାଚୁଆଳି ହଜାର ହଜାର । ନାଚର ଗତି ଅତି ତୀବ୍ର ଏବଂ ନାଚର ମଞ୍ଚ ଅସୀମ ଆକାଶ । ଯେ ନାଚେ, ସେ

ବି ଗାଏ । ଅତ୍ୟନ୍ତ ଅପୂର୍ବ ସମାବେଶ । ତା'ରି ପାଖରେ ଶଶାଠୁଁ ମିରିଗଶିଶୁ ପର୍ଯ୍ୟନ୍ତ ସମସ୍ତେ ଅଟକି ଚାହିଁ ରହିଛନ୍ତି ଓ ଦେଖୁଛନ୍ତି ମହୁ ମହଲ* ଅଧିବାସୀମାନଙ୍କ ଉଡ଼ନ୍ତା ନାଚ ।



ଶାଳଗଛର ତଳ ଛକି ଉପରକୁ ଦକ୍ଷିଣମୁଖା ଗାତଟିଏ । ତାହା ହେଉଛି ମହୁ-ମହଲର ବାହାର ଦ୍ୱାର । ଭିତରକୁ ଅଦୃଶ୍ୟରେ ଅଛି ବିଶ୍ୱକର୍ମା ଗଢ଼ିଲା ଭଳି ଅତୁଳନୀୟ ସୁନ୍ଦର ପ୍ରାସାଦ । ସେଥିରେ ରହନ୍ତି ପ୍ରାୟ ପଚାଶ ହଜାର ମହୁମାଛି ବା ମହୁକ । ଗୋଟିଏ ତଳମୁହାଁ କଳସୀ ଆକାରର ଗହ୍ୱର ମଧ୍ୟରେ ମହୁମହଲ ଗଢ଼ାଯାଇଛି । ଦୁଆରମୁହଁ ଧାରରେ ଓ ଗଛର ବକଳ ଏବଂ କାଠରେ ଗୋଟିଏ ଦୁଇଟି ଫାଟରେ ମହୁକ-ଅଠା ବୋଳା ଯାଇଛି । ଗୋଳିଆ କାଚ ପରି ଏହି ଅଠା ଶକ୍ତ ଏବଂ କ୍ଷୀଣ ସ୍ୱଚ୍ଛ ଝୁଣା, କୋଳି, ବବୁରୀ ଅଠା ଆଦି ଗୋଳେଇ ସେହି ପଲସ୍ତରା କରାଯାଇଛି, ପୁଣି ଅତି ଚିକ୍କଣ କରି ବୋଳା ଯାଇଛି । ଏପରି କୌଶଳରେ ତାହା କରାଯାଇଛି ଯେ, ସୂର୍ଯ୍ୟକିରଣ ତାହା ଉପରେ ପଡ଼ି ଇନ୍ଦ୍ରଧନୁର ସାତରଙ୍ଗରେ ବିଭକ୍ତ ହୋଇ ମହୁମହଲକୁ ବିଚିତ୍ର ଶୋଭାରେ ମଣ୍ଡନ କରୁଛି । ବିଶେଷରେ କାକରମଖା ସକାଳେ, ସଞ୍ଜବେଳେ ଏବଂ ଝଡ଼ ବା ବରଷା ପରେ ପରେ ମହୁମହଲର ଏଇ କୁହୁକୀ ଶୋଭା ଦେଖିବାକୁ ମିଳେ ।

---

*ସାଧାରଣତଃ ମହୁ ବସାକୁ ମହୁଫେଣା କହନ୍ତି; ମାତ୍ର ମହୁଫେଣା କହିଲେ ସମୁଦାୟ ବସାଟିକୁ ବୁଝାଏ ନାହିଁ । ଆମେ ଯେଉଁମାନଙ୍କ କଥା ଆଲୋଚନା କରୁଥାଇଁ, ସେମାନଙ୍କ ବସାରେ ଏକାଧିକ ଫେଣା ଥାଏ । ସେମାନେ ହେଉଛନ୍ତି ସାତଫେଣିଆ ମହୁମାଛି ବା ମହୁକ । ମହୁମାଛି ସମୁଚିତ ଶବ୍ଦ ନୁହେଁ । ଯେଉଁମାନେ ମହୁ କରନ୍ତି, ସେମାନେ ମାଛି ନୁହନ୍ତି । ତେଣୁ ମହୁମାଛି ଶବ୍ଦକୁ ବାଦ୍ ଦେଇ 'ମହୁକ' ଶବ୍ଦ ପ୍ରୟୋଗ କରାଯାଇଛି ଏବଂ ମହୁ-ବସା ବଦଳରେ ମହୁମହଲ କୁହାଯାଇଛି । ମହୁକ ଶବ୍ଦର ଉତ୍ପତ୍ତି ସମ୍ବନ୍ଧରେ 'ଏହି ବହିର ଲେଖା ଓ ପ୍ରକାଶନ କଥା' ପ୍ରଥମେ ପଢ଼ିବାକୁ ଅନୁରୋଧ ।

ମହୁମହଲର ଗଢ଼ଣ ଢଙ୍ଗ ମଧ୍ୟ ବିଚିତ୍ର । ସାହାଲା ସାହାଲା ହୋଇ ଘରଗୁଡ଼ିକ ଉପରୁ ତଳକୁ ତଳକୁ ଗଢ଼ାହୁଏ । ଗୋଟିଏ ସାହାଲାକୁ ଗୋଟିଏ ଫେଣା ବୋଲାଯାଏ । ପୁଣି ଝୁଲି ରହିଥିବା ମହଲାଗୁଡ଼ିକର ମୋଟ ମଧ ଉପର ତଳକୁ ସମାନ ଏବଂ



ଏକେ ଆରେକ ସମାନ । ଝୁଲଣ ମହଲାର ଠିକ୍ ମଝିରେ ପତଳା ସୁନା ପତରର କାନ୍ଥ । ସେହି ସାଧାରଣ କାନ୍ଥ ଉପରେ ଉଭୟ ପାର୍ଶ୍ୱରେ ହଜାର ହଜାର କୁନି କୁନି ଛ'କୋଣୀ ଛ'ଭୁଜୀ କୋଠରୀ ଉପର ଆଡ଼କୁ ସାମାନ୍ୟ ତେରେଛେଇ ଗଢ଼ା ହୋଇଛି । କୋଠରୀଗୁଡ଼ିକ ଖଞ୍ଜାଖଞ୍ଜି ହୋଇ ସମାନ୍ତର ଭାବରେ ଗଢ଼ା । ସମାନ ଆକାର । କାନ୍ଥର ମୋଟ ସବୁବେଳେ ଇଞ୍ଚକର ହଜାର ଭାଗରୁ ମାତ୍ର ଏକଭାଗ । ସୁନା ପରି ସୁରଙ୍ଗ ଉଜ୍ଜ୍ୱଳ, ତମ୍ବା ପାତ ପରି ଶକ୍ତ । ଏତେ ପତଳା କାନ୍ଥରେ ଗଢ଼ା ଶହେ ମହଲାର କୋଠା କେଉଁଠି ବା ଅଛି ? ଅଥଚ ତାରି ଭିତରେ କେବଳ ଗୋଟିଏ ମହଲାରେ ହୁଏତ ତିନି ବା ଚାରି କିଲୋ ମହୁ ସାଇତା ହୋଇ ରହିଛି ଏବଂ ତା ଉପରେ ଅଧିକରେ ହଜାର ହଜାର ମହୁକ ନାନା ଭଙ୍ଗୀରେ କର୍ମତତ୍ପର । ସାହାଲାଟିର ହଲଚଲ ନାହିଁ କିମ୍ବା ଓହଳି ପଡ଼ିବା ନାହିଁ ।

ସାହାଲା ସାହାଲା ମଝିରେ ଯେଉଁ ଦାଣ୍ଡ ବା ଜନପଥ, ଟା'ର ଚଉଡ଼ା ସବୁଠି ସମାନ । କେଉଁଠି ହେଲେ ସୂତାଏ ଏପଟ ସେପଟ ହୁଏ ନାହିଁ । ଦୁଇ ପାଖର ମହଲାଗୁଡ଼ିକରେ ଦୁଇ ଦଳ ମହୁକ ଏକକାଳୀନ କାମ କଲାବେଳେ ଯେପରି କୌଣସି ବାଧା ନ ହେବ ସେହି ଅନୁସାରେ ଦାଣ୍ଡ ଚଉଡ଼ା ମାପ । ସେହି ଦାଣ୍ଡରେ କେତେ ଖେଳା ଲୀଳା !



ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଏଇ ସହର । ଏତେ ବଡ଼ ସହର । ହେଲେ କେଉଁଠି ତିଳେ ମାତ୍ର ମଳ ନାହିଁ କି ମଳିଧୂଳି ନାହିଁ । ସବୁ ସାଫ୍‌ସୁତର । ହଜାର ହଜାର ଶ୍ରମିକା (ରେଜା) ଅନବରତ ନାନା କାମରେ ବ୍ୟସ୍ତ । ଯା ଆସ ଲାଗିଛି । ଧନ୍ଦା ବି ଅନେକ । କାମ କରିବାର କାଇଦା ମଧ୍ୟ ବହୁତ । ପୁଣି କାମ କରିବାର ଧାରା ତୀବ୍ର, —ପ୍ରଖର । ମଣିଷର କୌଣସି ଉଦ୍ୟୋଗରେ ସେଇ ବେଗ ପ୍ରକାଶ ପାଇପାରେ ନାହିଁ । ଟିକି ଟିକି ପରୀ ପରି ସେହି ସୁନ୍ଦର ସପକ୍ଷ ସୁନେଲି ରେଜାମାନେ ବହୁ ଭାର ବୋହି ଆଣି ଭଣ୍ଡାର ପରିପୂର୍ଣ୍ଣ କରିଦିଅନ୍ତି । ଫୁଲରୁ ମଧୁରସ ଏବଂ ପରାଗରେଣୁ ସେମାନେ ବୋହି ଆଣନ୍ତି । ବେଳେ ବେଳେ ଭଣ୍ଡାର ପୂରି ଉଛୁଳି ପଡ଼େ ଅଥବା ଫାଟି ପଡ଼େ । ପବନରେ ଧୂଳି ମଳି ସହର ଭିତରେ ପଶିଯାଇ ଚକାଭଉଁରୀ ଖେଳେ । ଘରତୋଳା ଦ୍ରବ୍ୟମାନ ମଧ୍ୟ ଏଣେ ତେଣେ ଯେ ନ

ପଡ଼େ ତାହା ନୁହେଁ । ସହର ରାସ୍ତାରେ ଯୁଦ୍ଧ ବି ଲାଗେ, ବଲୁରୀଙ୍କ ସହିତ, ପିମ୍ପୁଡ଼ି ସହିତ । ଯୁଦ୍ଧରେ ଆପଣା ସୈନ୍ୟ ମରନ୍ତି । ଶତ୍ରୁସୈନ୍ୟ ମରନ୍ତି । ସେମାନଙ୍କ ଶବ ଗଡ଼ ଭିତରେ ଜମାହୋଇ ରହେ । ବିନାନୁମତିରେ ବେଳେ ବେଳେ ମାଛି ମଶା ଆଦି ପତଙ୍ଗ ଗଡ଼ ଭିତରେ ପଶି ଯାଆନ୍ତି । ସେମାନେ ଆଉ ଫେରନ୍ତି ନାହିଁ । ମୁଣ୍ଡ, ଗଣ୍ଡି, ଡେଣା, ଗୋଡ଼, ସବୁ ଖଣ୍ଡ ଖଣ୍ଡ ହୋଇପଡ଼େ । ମାତ୍ର ତୁରନ୍ତ ସବୁ ସଫା ହୋଇଯାଏ । ରେଜାମାନେ ସବୁ ଅନାବଶ୍ୟକ ଆବର୍ଜନା ଗଡ଼ ବାହାରକୁ ବୋହି ଆଣି ଫିଙ୍ଗି ଦିଅନ୍ତି । ଗଡ଼ ସବୁଦିନେ ଓ ସବୁବେଳେ ଦେବସ୍ଥାନ ଭଳି ପରିଷ୍କାର ପରିଚ୍ଛନ୍ନ ଥାଏ ।




ଚମତ୍କାର ଖଞ୍ଜ । ସମୁଦାୟ ମହୁମହଲ ଏକ କୁହୁକୀ ସହର ପରି । ସେହି ସହରରେ ଦିନ ରାତି, ଖରା ଶୀତ, ସର୍ବଦା ତାପମାନ ସମାନ ରହେ । ଖୁବ୍ ବିତ୍ତବାନ୍ ଲୋକ ନ ହେଲେ ଘରଟିକୁ ଶୀତତାପନିୟନ୍ତ୍ରିତ କରିପାରେ ନାହିଁ । ଅଥଚ ମହୁମହଲରେ ଗୋଟିଏ ବା କେଇଟି କୋଠରୀ ନୁହେଁ, ଗୋଟିଏ ବା ଦୁଇଟି ସାହାଲା ନୁହେଁ, ସମୁଦାୟ ସହରଟି ଶୀତତାପନିୟନ୍ତ୍ରିତ । ତା ଭିତରେ ସବୁଆଡ଼େ ତାପମାନ ସମାନ, ଆର୍ଦ୍ରତା ସମାନ । ମୃଦୁ ପବନ-ପ୍ରବାହ ସବୁଆଡ଼େ ପ୍ରସାରିତ ହୋଇଥାଏ । ଉତ୍ତାପ ବଢ଼ିଲେ ସେବିକାମାନେ କାମରେ ଲାଗି ଯାଆନ୍ତି । ସ୍ଥାନେ ସ୍ଥାନେ ଜଳ-ଭାଣ୍ଡ

ମୁକ୍ତ-ମୁଖରେ ରଖି ଦିଆଯାଏ ଏବଂ ସେବିକାମାନେ ଚାମର-ଚାଳିକାଙ୍କ ଭଳି ନିଜର ସୂକ୍ଷ୍ମ ପକ୍ଷଗୁଡ଼ିକୁ ଅତି ତୀବ୍ର ଭାବରେ ଚାଳନା କରନ୍ତି । ଧାଡ଼ି ଧାଡ଼ି ହୋଇ ସେବିକାମାନେ ସଜାଡ଼ି ହୋଇ ପଡ଼ି ରହନ୍ତି ଚଳକୁ ଜାବୁଡ଼ି କାମୁଡ଼ି । ସେମାନେ ଏଡ଼େ ବେଗରେ ପକ୍ଷ ସଂଚାଳନ କରନ୍ତି ଯେ, ପକ୍ଷମାନ ଅଦୃଶ୍ୟ ହୋଇଯାଏ । ବାହାରେ ସୂର୍ଯ୍ୟକିରଣ ପ୍ରଖର ହୋଇପାରେ, ଭୂମି ଉତପ୍ତ ହୋଇପାରେ, ବୃକ୍ଷଲତାର କୋମଳ ପତ୍ର ଝାଉଁଳି ଯାଇପାରେ, କଅଁଳ ଘାସ ଶୁଖି ସଳିତା ହୋଇପାରେ; ମାତ୍ର ମହୁସହର ଭିତରେ ସଦା ବସନ୍ତ ବିଦ୍ୟମାନ । ବାହାରେ ହୁଏତ ପ୍ରଚଣ୍ଡ ଜାଡ଼ । ହେଲେ ମହୁମହଲ ଭିତରେ ତା'ର ପ୍ରଭାବ ପଡ଼େ ନାହିଁ । ସେବିକାମାନେ ତା' ଉପରେ ତା' ଉପରେ ଲଦିହୋଇ ଜାକିଜୁକି ହୋଇ ବସନ୍ତି । ଫଳରେ ସେମାନଙ୍କ ଶରୀରରୁ ଯଥେଷ୍ଟ ଉତାପ ବାହାରି ସମୁଦାୟ ସହରଟିକୁ ଉତପ୍ତ କରିଦିଏ । ତେଣୁ ଅଳକାପୁରୀ ପରି ମହୁମହଲରେ ଅଖଣ୍ଡ ବସନ୍ତ, ମଳୟର ପ୍ରବାହ ଏବଂ ତା ସହିତ ଶତ-ସହସ୍ର ପୁଷ୍ପ-ସୁବାସର ପରମ ଆମୋଦ ।

ଦେଶର ସବୁ ଅଞ୍ଚଳରେ—ବଣରେ, ଜଙ୍ଗଲରେ, ସହର ଉପକଣ୍ଠରେ, ଗାଁଗହଳିରେ—ଅଗଣିତ ମହୁମହଲ ବଢ଼ୁଛି । ସେଥିରେ କାମ ଗୀତ ନାଚ ଲାଗି ରହଛି । ପ୍ରତ୍ୟେକଟି ମାଣିକ୍ୟ-ମହଣରେ ଗଠିତ ସୁରମ୍ୟ ଅନୁପମ ଗଡ଼ । ସେଥିରେ ଜୀବନଧାରା ପାହାଡ଼ୀ ଝରଣା ପରି ଗୀତ ନାଚ ଭିତରେ ଗଡ଼ିଯାଉଛି । ଜୀବନଧାରାକୁ ବିସ୍ତୃତ କରିବାପାଇଁ ତାଙ୍କର ଅବିରାମ ପ୍ରସ୍ତୁତି ହିଁ ଅନବଦ୍ୟ କୃତି । ପ୍ରାକୃତିକ ବିପର୍ଯ୍ୟୟକୁ ଜିଣି ସେମାନେ ବଢ଼ନ୍ତି, ଗଢ଼ନ୍ତି । ଜୀବନଯାତ୍ରା ସେମାନଙ୍କର ଦୁରନ୍ତ, ଅବସାଦହୀନ, ଅତ୍ୟନ୍ତ ନାଟକୀୟ । ଆମେ କେବଳ ତାଙ୍କ ବାଟରେ କଣ୍ଟା ପକାଉଁ, ତାଙ୍କ ଭଣ୍ଡାର ଲୁଣ୍ଠନ କରୁଁ, ତାଙ୍କ ଘର ଭାଙ୍ଗୁ । ଆସ ଦେଖିବା ତାଙ୍କ ଜୀବନ କିପରି ସୁନ୍ଦର ଉଦାର ।

## ପବନ-ବାହନ

ବାୟୁମଣ୍ଡଳରେ ଚଢ଼େଇ ଉଡ଼େ । ମଣିଷ ବି ଉଡ଼ିବା ସପନ ଦେଖେ । ସେ ନାନା କଳ ବାହାର କରି ତାରି ସାହାଯ୍ୟରେ ଉଡ଼େ । କଳ ବିଗିଡ଼ିଲେ ଶେଷ । ମାତ୍ର ମହୁମାଛି ବା ମହୁକ ଉଡ଼ିବା ସ୍ୱତନ୍ତ୍ର । ଏଡ଼େ ଅନାୟାସରେ ମହୁକମାନେ ଗଗନେ ପବନେ ଉଡ଼ିବୁଲନ୍ତି ଯେ, ମନେହୁଏ ଯେପରି ସେମାନେ ପବନର ଏକ ଏକ ମୂର୍ତ୍ତିମାନ ଅଂଶ । କର୍ପୂରର ଗନ୍ଧ ଯେପରି ଛାଏଁ ଛାଏଁ ବାୟୁରେ ସଞ୍ଚରିଯାଏ, ପବନ ଦୋଳାରେ ମହୁକ ସେହିପରି ଉଲ୍ଲାସରେ ଖେଳୁଥାଏ । ପବନ ତାର ବାହନ ।

ଉଜ୍ଜ୍ୱଳ ବସନ୍ତ ଆକାଶ ଭିତରକୁ ଯେତେବେଳେ ରଙ୍ଗେଲୀ ଶର ପରି ମହୁକ

ଉଡ଼ିଯାଏ ସେତେବେଳ ତାର ସୂକ୍ଷ୍ମ ରୂପେଲୀ ପକ୍ଷ ଦୁଇଯୋଡ଼ା ମିନିଟ୍‌ରେ ଷୋଳହଜାର ଥର ପବନକୁ ଥରେଇ ଦିଅନ୍ତି । ତା ବକ୍ଷ ଭିତରେ ଥିବା ବାୟୁପୁଟଗୁଡ଼ିକରେ ପବନ ଭରିହୋଇ ଉଡ଼ିଲାବେଳେ ଫୁଲି ଫୁଲି ଯାଏ । ତେଣୁ ମହୁକର ଶରୀର ବହୁତ ହାଲକା ହୋଇଯାଏ—ଉଡୁଥିବା ତୂଳା-ଗୋଳାଟି ପରି । ତେଣୁ ସେ ମନଇଚ୍ଛା ଦଶ ଦିଗକୁ ଅକ୍ଳେଶରେ ଉଡ଼ିପାରେ କିମ୍ବା ଗୋଟିଏ ବିନ୍ଦୁରେ ଝୁଲି ରହିପାରେ । ପଛକୁ ଉଡ଼ିପାରେ, କରକୁ ଉଡ଼ିପାରେ, ଖୁବ୍ ତୀବ୍ର ବେଗରେ ଠିକ୍ ଉପରକୁ ଉଠିଯାଇ ପାରେ । ଘଣ୍ଟାକୁ ବତିଶ କିଲୋମିଟର ବେଗରେ ଉଡୁ ଉଡୁ ଅକସ୍ମାତ୍ ଆଖିପିଛୁଳାକେ ସ୍ଥିର ହୋଇଯାଇ ପାରେ । ପୁଣି ବିନା ବିଶ୍ରାମରେ ବାର କିଲୋମିଟର ପର୍ଯ୍ୟନ୍ତ ଉଡ଼ିଯାଇ ପାରେ ।





ଯେଉଁ ଚଳଚଞ୍ଚଳ ଅଞ୍ଚଳରେ ମହୁକ ଉଡ଼ି ଉଡ଼ି ଯାଏ, ସେହି ସ୍ଥାନରେ

ଅଦୃଷ୍ଟ ଶୋଭାସମ୍ଭାର ଖେଳେଇ ହୋଇଯାଏ । ଯେଉଁ ସୁଷମା-ପସରା ଭିତର ପ୍ରାଣୀଙ୍କ ନଜରକୁ ଆସିପାରେ ନାହିଁ, ସେହିପରି ସ୍ୱତନ୍ତ୍ର ସୌନ୍ଦର୍ଯ୍ୟର କୁହୁକ ମୁକୁଳିତ ହୋଇଥାଏ ମହୁକ ଆଗେ ଆଗେ । କାରଣ ମହୁକର ଦୃଷ୍ଟିଶକ୍ତି ଏବଂ ଦୃଷ୍ଟିସୀମା ଅନନ୍ୟ-ସାଧାରଣ । ଆମର ଦୁଇଟି ଆଖି, ମାତ୍ର ମହୁକର ପାଞ୍ଚଟି ଆଖି । ଅଧିକରେ ଆମ ଆଖି ତୁଳନାରେ ତାର ଆଖିର କ୍ଷମତା ଏବଂ ଗଢ଼ଣ ଅଲୌକିକ । ହିନ୍ଦୁଧର୍ମରେ ପରମ ପରାକ୍ରମୀ ଦେବ ଦେବ ମହାଦେବ ଓ ଦେବୀ ଦୁର୍ଗାଙ୍କର ତିନୋଟି ଲେଖାଏଁ ଆଖି କଳ୍ପନା କରାଯାଇଛି । ତୃତୀୟ ନେତ୍ର କପାଳରେ, ଏବଂ ସେଇଟିର ଦୁରନ୍ତ କ୍ଷମତା । ମହୁକ କପାଳରେ ପ୍ରକୃତରେ ତିନୋଟି ନେତ୍ର । ଆମ ମୁହଁରେ ଯେଉଁ ଢଙ୍ଗରେ ଦୁଇଟି ଆଖି ମହୁକର ସେହିଭଳି ଦୁଇଟି ଆଖି; ହେଲେ ସେହି ଆଖି ଦୁଇଟି ବିଚିତ୍ର । ପ୍ରତ୍ୟେକଟିର ପୁଣି ଅନେକ ଆଖି ଠୁଳରେ ମିଶି ରହିଛି । ତେଣୁ ତାହାକୁ ସଂଯୁକ୍ତାକ୍ଷ ବା ପୁଞ୍ଜାକ୍ଷ ବୋଲାଯାଏ । ଆମ ଆଖିରେ ଗୋଟିଏ ଡୋଳା, କିନ୍ତୁ ମହୁକର ଗୋଟିଏ ପୁଞ୍ଜାକ୍ଷିରେ ଛ' ହଜାର ଡୋଳା । ତେଣୁ ଆମର ମାତ୍ର ଦୁଇଟି ଡୋଳା ଥିବାକୁ ମହୁକର ବାର ହଜାରରୁ ଅଧିକ ଡୋଳା । କି ଚମତ୍କାର !



ଏତେ ଏତେ ଡୋଳାରେ ଯେଉଁ ଆଲୁଅ ଛାଇର ଖେଳ ଲାଗିଥାଏ, ତାହା ଜଣେ ଉଚ୍ଚକୋଟୀର ରଙ୍ଗପ୍ରିୟ କଳାକାର ମଧ୍ୟ କଳ୍ପନା ବା ଜଳ୍ପନା କରିପାରିବ ନାହିଁ । ଶରତ, ବସନ୍ତ, ଉଦୟ, ଅସ୍ତ, ପୂନେଇ ଚାନ୍ଦ, ବର୍ଷାକାଳର ଇନ୍ଦ୍ରଧନୁ,

ଫୁଲରେ ପ୍ରଜାପତି ପ୍ରଭୃତି ଆମ ଆଖିକୁ ସୁନ୍ଦର ଦିଶେ । ମାତ୍ର ମହୁକ ଆଖିରେ ଏଇସବୁ ସୌନ୍ଦର୍ଯ୍ୟ ବି ହଜାର ହଜାର ଗୁଣ ବଢ଼ିଯାଏ । ଅଧିକରେ ଆମ ଆଖିରେ ଯାହା ସାଦାସିଧା, ତାହା ମଧ୍ୟ ତା ଆଖିରେ ବର୍ଣ୍ଣ ଏବଂ ରଙ୍ଗର ଉତ୍ସବ ସୃଷ୍ଟି କରିପାରେ । ପବନରେ ଉଡୁଥିବା ଧୂଳିକଣା, ପତ୍ର ଉପରେ ଆଲୋକର ଲହରୀ, ଶାଳଗଛ ବକଳରେ ଛାୟାଲୋକ ନୃତ୍ୟ, ଫୁଲର ପାଖୁଡ଼ାଗୁଡ଼ିକର ଥର ଥର ବେପଥୁ, ଘାସପତ୍ରର ଶିଶିରବିନ୍ଦୁ ଉପରେ ତରା ଝୁଲର ଖେଳ... । ସବୁ ମହୁକ ଆଖିରେ ଶୋଭା-ଶୃଙ୍ଗାର ରଚନା କରନ୍ତି । ମହୁକର ଜୀବନ ଆଲୋକ ଏବଂ ରୂପରଙ୍ଗର ଅଖଣ୍ଡ ପ୍ରଦର୍ଶନୀ ମଧ୍ୟରେ ଅତିବାହିତ ହୋଇଥାଏ । ସେଥିରେ ଶେଷ ନାହିଁ କିମ୍ବା ଅବସାଦ ନାହିଁ ।



ଦୃଶ୍ୟରାଜି ଯେପରି ଅନୁପମ, ସୁବାସ ସେହିପରି ବିମୋହନ । ଆମ ନାକରେ ଘ୍ରାଣ କରିବା ଶକ୍ତି ନିହିତ । ମହୁକର ସେ ପ୍ରକାର ନାକ ନାହିଁ । ବଦଳରେ ତା'ର ଦୁଇଟି ଶୃଙ୍ଗିକା ମଥା ଉପରୁ ବାହାରି ହଲ ହଲ ହେଉଥାଏ । ତା ଦେହରେ ପାଞ୍ଚହଜାର କ୍ଷୁଦ୍ର କ୍ଷୁଦ୍ର ଗର୍ତ୍ତ । ସେହି ଗର୍ତ୍ତଗୁଡ଼ିକ ମହୁକର ଘ୍ରାଣେନ୍ଦ୍ରିୟ । ସେଇମାନଙ୍କ ସାହାଯ୍ୟରେ ସେ ବାସନା ବାରେ । ଆମର ଘ୍ରାଣଶକ୍ତି ଅତ୍ୟନ୍ତ ସଙ୍କୁଚିତ । ନାକ ନିକଟରେ କୌଣସି ବାସଦ୍ରବ୍ୟ ଥିଲେ ଆମେ ସଂକ୍ଷିପ୍ତଭାବେ କହୁଁ ସୁଗନ୍ଧ କି ଦୁର୍ଗନ୍ଧ । ଅଧିକ ହେଲେ ହାତ ଆଙ୍ଗୁଳିରେ ଗଣିବା ପ୍ରମାଣେ କେତୋଟି ଅତି

ପରିଚିତ ବାସ, ଯଥା : ଚୂଆ, ଚନ୍ଦନ, କର୍ପୂର, ଅଗରୁ, ପଦ୍ମ, ଗୋଲାପ, ଚମ୍ପା, ବଉଳ, ଘିଅ, ମହୁ ଆଦିର ସୁବାସ ଆମେ ପାଖରୁ ଜାଣିପାରୁଁ । ମାତ୍ର ମହୁକ, –ଅଦ୍ଭୁତ ତା'ର ବାସନା ବାରିବା କ୍ଷମତା । ପ୍ରାୟ ଏକ କିଲୋମିଟରେ ଦୂରରୁ ଗୋଟିଏ ପଦ୍ମଫୁଲର ବାସନା ମହୁକ ଶୁଙ୍ଗିକାରେ ଆଘାତ କରେ । ମହୁକକୁ ଅଥୟ କରେ । ପରାଗ ପାଇଁ ମଧୁରସ ପାଇଁ ସେ ଉଡ଼ି ଉଡ଼ି ଯାଏ ।

## ତନ୍ମୟ ନାଚ

ପହିଲି ଫଗୁଣର ଚିକ୍ ଚିକ୍ ସକାଳ । ମହୁମହଲରେ ଚମକର ଜମକ ଲାଗିଛି । କାରଣ ନୂଆ କାମର ସନ୍ଧାନ ମିଳିଛି । ତେଣୁ ଉଚ୍ଛନ୍ନ ଜୀବନ । ମହୁମହଲର ଚଉପାଶରେ ଖାଦ୍ୟଭାଣ୍ଡ ଠାବ କରିବାକୁ ଶହ ଶହ ସନ୍ଧାନୀ ମହୁକ ପ୍ରତିଦିନ ଉଡ଼ି ଉଡ଼ି ଯାନ୍ତି । ଆଜି ବି ଯାଇଥିଲେ । ସେଥିରୁ ଗୋଟିଏ କିଛି ଦୂରରେ ଆମ୍ବ ଗଛଟିରେ ମଧୁରସ ଠାବ କରିଛି । ଆମ୍ବଡାଳ ଥେଉଳିଥିଲା । ଥେଉଳରୁ ବଉଳ ହେଲା । ଏବେ ବଉଳ ଫୁଲରି ହୋଇଛି । ସେଥିରେ ମଧୁରସ ଭରପୂର ହୋଇଛି । ଭଗ୍ୟବତୀ ସନ୍ଧାନୀ ମହୁକଟି ଦୂରରୁ ବାସନା ବାରି ଆମ୍ବବଉଳ ଡାଳରେ ପହଞ୍ଚିଛି । ଉଦର ଭରି ସେ ଆମ୍ବ ମଦ ପିଇଛି । ସେ ମୋହିତ ହୋଇଛି । ତନ୍ମୟ ହୋଇଛି । ଭିତର ତାର ମଦପୂର୍ଣ୍ଣ, ବାହାର ଗନ୍ଧମୟ । ସେ ଫେରି ଆସୁଛି । ଅକଳନ ରସ-ଭଣ୍ଡାର ଆବିଷ୍କାର କରି ସେ ଫେରୁଛି ।

ଆନନ୍ଦ-ଅଧୀର ସେହି ମହୁକଟି ମଧୁର ଭବିଷ୍ୟ-ବାଣୀ ବୋହି ଫେରୁଛି । ଆମ୍ବ ବଉଳ ଠାବ କଲାବେଳେ ସେ ଅଙ୍କେଇ ବଙ୍କେଇ ଯାଇଥିଲା । ଫେରିବାରେ ସେପରି ଦୋ ଦୋ ପାଞ୍ଚ ନାହିଁ । ଅପୂର୍ବ ଦିଗ ଓ ଦୂରତା-ଜ୍ଞାନ ବଳରେ ସେ ସିଧା ସିଧା ଉଡ଼ିଆସି ମହୁମହଲ ଦ୍ୱାରରେ ଓହ୍ଲେଇଛି । ତତ୍‌କ୍ଷଣାତ୍ ଦୁଇଟି ବଳିଷ୍ଠ ଦ୍ୱାରପାଳ ଗାତ ଭିତରୁ ବାହାରି ଆସି ସେମାନଙ୍କ ଶୁଙ୍ଗିକା ପରସ୍ପର ମଧ୍ୟରେ ଛନ୍ଦି ବାଟ ଓଗାଳି ଠିଆ ହୋଇଗଲେ; ଠିକ୍ ଯେପରି ରାଜଦ୍ୱାରରେ ସୈନ୍ୟମାନେ ଖଣ୍ଡା ଉଞ୍ଚେଇ ସନ୍ଦେହୀ ଲୋକର ପ୍ରବେଶ ରୋଧ କରନ୍ତି । ମାତ୍ର ଦ୍ୱାରପାଳ-ଦ୍ୱୟ ନିମିଷେକରେ ଉପସ୍ଥିତ ମହୁକ ଦେହର ଗୋଷ୍ଠୀ-ଗନ୍ଧ ବାରି ବାଟ ଛାଡ଼ି ଦିଅନ୍ତି ।

ମଧୁଗନ୍ଧଭରା ମହୁକ ତୁରନ୍ତ ଗଛ କୋରଡ଼ରେ ପ୍ରବେଶ କରେ । ତା ଭିତର ଆମକୁ ସମ୍ପୂର୍ଣ୍ଣ ଅନ୍ଧକାର, ଘନ ଘୋର ଅନ୍ଧାର; ମାତ୍ର ମହୁକର କୁହୁକ ଆଖି ପାଇଁ ତହିଁ ଭିତରେ ଯଥେଷ୍ଟ ଆଲୋକ ଅଛି । ଖରାବେଳେ ଚାହୁଆ ତଳେ, ମେଘୁଆ ଦିନରେ କିମ୍ବା ଗୋଧୂଳି ବେଳାରେ ଯେଉଁପରି କଅଁଳ ଆଲୋକ ବିଞ୍ଚୁଡ଼ି

ହୋଇଥାଏ, ମହୁମହଲ ଭିତର ସେହିଭଳି ଆଲୋକିତ ହୋଇଥାଏ ମହୁକ ଆଖି ଲାଖି । ସେହି ଆଲୋକରେ ନୂଆ ସମ୍ପଦ ସନ୍ଧାନର ବାର୍ତ୍ତାବହ ମହୁକଟି ତରତରରେ ଝୁଲୁଥିବା ଗୋଟିଏ ମହଲା ଉପରେ ଡେଇଁପଡ଼େ । ପ୍ରଥମେ ସେ ମଧୁରସରୁ କିଛିତ୍ ମହୁଫେଣାର ମହୁକୋଷରେ ଭରିଦିଏ । ତା'ପରେ ସେ ତା'ର ଗନ୍ଧମଧୁ ଟିକିଏ ଟିକିଏ ସଭିଙ୍କୁ ଦେଇ ଦେଇ ଯାଏ ଏବଂ ନାଚି ନାଚି ଯାଏ । ଦେବାରେ ଏବଂ ନାଚିବାରେ ସେ ବିଭୋର ।

ସେ ନବୀନ ବସନ୍ତ ଋତୁର ବାର୍ତ୍ତାବହ ହୋଇ ନାଚେ ଏବଂ ଗୁଣୁ ଗୁଣୁ ହୋଇ ଜୀବନ-ସଂଗୀତ ଗାଏ । ମହୁମହଲରେ ସେ ହୁଏ ପ୍ରଧାନ ନର୍ତ୍ତକୀ, —ରାଜନର୍ତ୍ତକୀ । ଏକ ନିର୍ଦ୍ଦିଷ୍ଟ ଭଙ୍ଗୀରେ ଛନ୍ଦେ ଛନ୍ଦେ ସେ ନାଚି ନାଚି ଯାଏ, ଗାଇ ଗାଇ ମାତେ । ତା'ର ଦ୍ରୁତନୃତ୍ୟ ଏବଂ ପକ୍ଷ କମ୍ପନ ଯୋଗୁଁ ତା ଦେହର ମଧୁଗନ୍ଧ ମହଲ ମଧରେ ପ୍ରସାରିତ ହୁଏ ।

ସମସ୍ତେ ସ୍ତବ୍ଧ ଓ ମୁଗ୍ଧ ହୋଇ ଚକିତ ନୟନରେ ଚାହିଁ ରହନ୍ତି । ଅନ୍ୟାନ୍ୟ କାମ ଶିଥିଳ ହୋଇଯାଏ । ଶ୍ରମିକା ମହୁକମାନେ ନୂତନ ଶିହରଣର ଆଭାସ ପାଆନ୍ତି । ସେମାନେ ତନ୍ମୟ ହୋଇ ମୋହିତ ହୋଇ ନୂତନ ମଧୁଭାଣ୍ଡ ଆଡ଼କୁ ଧାଉଡ଼ି ଦିଅନ୍ତି । ସେଥିରୁ ଟିକିଏ ଟିକିଏ ମଧୁ ଚାଖନ୍ତି । କେତେକ ମଧ ଜିଭ ବଢ଼େଇ ନର୍ତ୍ତକୀର ଜିଭରୁ ରୁଆଏ ମଧୁ ଚାଟି ନିଅନ୍ତି । ବ୍ୟଗ୍ର କମ୍ପିତ ଶୁଙ୍ଗିକା ଦ୍ୱାରା ସେମାନେ ନର୍ତ୍ତକୀକୁ ଛୁଇଁ ନିଅନ୍ତି । ସେତିକି ଯଥେଷ୍ଟ । ସେମାନେ ପୁଲକିତ ହୁଅନ୍ତି । ଭାବ ବିନିମୟ ହୁଏ । ମନ୍ତ୍ରଦୀକ୍ଷା ହୁଏ । ଗୋଟିଏ ମିନିଟ୍‌ରେ ସମଗ୍ର ଗୋଷ୍ଠୀରେ ଭାବାବେଶ ହୁଏ । ନୂଆ ଜାଗରଣ ବଢ଼ିଉଠେ ।

ତତ୍ପରେ ଆରମ୍ଭ ହୁଏ ଏକ ଗୁପ୍ତ ରହସ୍ୟମୟ ବ୍ୟବସ୍ଥା । ଖଣ୍ଡିଏ ଲୁହାପାତ ଉପରେ ଗୋଟିଏ ଚୁମ୍ବକ ଏକ ଦିଗରେ ବାରମ୍ବାର ଘଷିଲେ ଲୁହାପାତ ଖଣ୍ଡିକ ମଧ ଚୁମ୍ବକରେ ପରିଣତ ହୋଇଯାଏ । ଠିକ୍ ସେହିପରି ନର୍ତ୍ତକୀର ନାଚ ଭଙ୍ଗୀ ଦେଖି ଏବଂ ମଧୁଗନ୍ଧରୁ ଜାଣିଚାଏ ଲାଭକରି ସାଧାରଣ ଶ୍ରମିକମାନଙ୍କର ଜ୍ଞାନୋଦୟ ହୁଏ । ଖାଦ୍ୟ ସଂଗ୍ରହକାରୀ ଶ୍ରମିକରୁ ଗୋଟିଏ ତା'ପରେ ଆଉ ଗୋଟିଏ କ୍ରମେ କ୍ରମେ ଅନ୍ୟମାନେ ନାଚ ଗହଳିରୁ ଖସି ବାହାରି ଯାଆନ୍ତି । ଆକାଶ ବକ୍ଷରେ ସେମାନଙ୍କ ଜାଲୀ ରୁପେଲୀ ପକ୍ଷ ମେଲି ଉଡ଼ି ଯାଆନ୍ତି—ଦୂର ଆମ୍ବତୋଟାର ଆମ୍ବବଉଳ ପାଖକୁ ସିଧାସଳଖ ।

ନର୍ତ୍ତକୀର ଅଭିପ୍ରାୟ ଅନ୍ୟମାନେ କିପରି ବା ଜାଣନ୍ତି ? ନର୍ତ୍ତକୀ ତା'ର ଗୀତ ମାଧମରେ କ'ଣ ସନ୍ଦେଶ ଗାଇଥାଏ ? ମହୁକମାନେ କ'ଣ ଧ୍ୱନିମୂଳକ

ଭାଷା ବ୍ୟବହାର କରନ୍ତି ? ପ୍ରକୃତରେ ଧ୍ୱନି ସାହାଯ୍ୟରେ ସାମାନ୍ୟ କେତେକ ମୌଳିକ ପ୍ରବୃତି ବ୍ୟତୀତ ଅନ୍ୟ କୌଣସି ସଙ୍କେତ ପରସ୍ପର ମଧ୍ୟରେ ସେମାନେ ଆଦାନ ପ୍ରଦାନ କରିପାରନ୍ତି ନାହିଁ । ଉଚ୍ଚ ସ୍ୱର ଭୟ ଆଶଙ୍କା ପ୍ରକାଶ କରେ ଏବଂ ଗମ୍ଭୀର ଅନୁଚ୍ଚ ଧ୍ୱନି ଆନନ୍ଦ ଉଲ୍ଲାସର ଆଭାସ ଦିଏ । ମାତ୍ର ସେମାନେ ଧ୍ୱନିଦ୍ୱାରା ବିଶଦ ବ୍ୟାଖ୍ୟା ପ୍ରଦାନ କରିବାକୁ ଅକ୍ଷମ । ତେବେ ନାଚର ଭଙ୍ଗୀ ଏବଂ ବେଗରୁ ସେମାନେ ଅନେକ କଥା ଜାଣି ପାରନ୍ତି । ଖାଦ୍ୟଭଣ୍ଡାର କେତେ ଦୂରରେ ଏବଂ କେଉଁ ଦିଗରେ, ତାହା ନାଚରୁ ଜଣାଯାଏ । ସେହି କଥାମାନ ପରେ ବିଚାର କରିବା । ସେଥିକୁ ଏକ୍ଷଣି ଡର ନାହିଁ । ଏଣେ ଯେ ଚମତ୍କାର ନାଚ ଚାଲିଛି । ଗହଳ ଚହଳ ଲାଗିଛି ।







ଏବେ ମହୁମହଲ ଦ୍ୱାରରେ ଅଖଣ୍ଡ ଏକ ଧାରା ଛୁଟିଛି । ସୁନେଲୀ ସୂର୍ଯ୍ୟକିରଣରୁ ଗୋଟି ଗୋଟି ହୋଇ, ପୁଣି ପରେ ପରେ ଯୋଡ଼ି ଯୋଡ଼ି ହୋଇ ବଧୂବାହୀ ମହୁକମାନେ ଓହ୍ଲାଉଛନ୍ତି । ଭିତରେ ପ୍ରବେଶ କରି ମଧୁକୋଷରେ ତାଙ୍କ ଭାର ଭରିଦେଉଛନ୍ତି ଏବଂ ଉତ୍‌ଫୁଲ୍ଲ ଚିତ୍ତରେ ନାଚରେ ଯୋଗ ଦେଉଛନ୍ତି । ଦର୍ଶକ ଭାବରେ ନୁହେଁ, – ନର୍ତ୍ତକୀ ଭାବରେ । ଦଣ୍ଡକ ଭିତରେ ପ୍ରାୟ ସବୁ ଜବାନ ଶ୍ରମିକ ମଧୁରସ ବୋହିବା ଏବଂ ତା'ପରେ ନାଚିବାରେ ମାତିଛନ୍ତି । ଉଚ୍ଛନ୍ନ ଆଜି ଜୀବନ ମହୁମହଲରେ । ନାଚୁଁ ନାଚୁଁ ପୁଣି ବି ଗୋଟିଏ ଗୋଟିଏ ଖସି ପଳେଇ ଯାଉଛନ୍ତି ମଧୁରସ ବୋହି ଆଣିବା ପାଇଁ । ତେଣୁ ମଧୁ ବୋହିବା ଏବଂ ନାଚିବା କେଉଁଥିରେ ହେଲେ ବିରତି ନାହିଁ । ମହୁମହଲରେ ପରୀରାଇଜର ସମ୍ମୋହନ ଉତ୍ସବ । ସମସ୍ତଙ୍କ କଣ୍ଠରେ ଆନନ୍ଦର, ତୃପ୍ତିର କୋମଳ ମଧୁର ବିଦଗ୍ଧ ଧ୍ୱନି । ଯେ ଶୁଣିଛି, ସେ ଜୀବନରେ କେଭେଁ ଭୁଲି ପାରିବ ନାହିଁ ।



ପ୍ରଚୁର ମଧୁରସ । ତେଣୁ ମହୁକର ଉତ୍ସାହ ଅପାର । ମହୁ ବୋହିଆଣି ମହୁମହଲ ଦ୍ୱାରରେ ପହଞ୍ଚିଲା ବେଳକୁ ସେଠି ବି ଭିଡ଼ ଗଢ଼ି ଉଠିଛି । ସେଠି ଭିଖାରୀଙ୍କ ଦଳ ଗୋଳ ଆରମ୍ଭ କରି ଦେଇଛନ୍ତି । ଭିଖାରୀ ବାହାରୁ ଆସନ୍ତି ନାହିଁ । ମହୁମହଲର ଯେତେକ ମରଦ ଜବାନ, ସେହିମାନେ ଭିଖାରୀ । ମରଦ ମହୁକ ମୋଟା ଓ ଛୋଟକାଟର ପତଙ୍ଗ । ସେମାନେ କୌଣସି କାମ କରନ୍ତି ନାହିଁ । ଖାଲି ଉଡ଼ି ଜାଣନ୍ତି, ବଂଶୀ ବଜାଇଲା ପରି ଉଚ୍ଚ ସ୍ୱରରେ ଗୀତ ଗାଆନ୍ତି ଆଉ ଦ୍ୱାରମୁହଁରେ ଚଉତରା ଉପରେ ଉଡ଼ି ଉଡ଼ି ଅନ୍ୟମାନଙ୍କ ଦେହରେ ହାବୁଡ଼ି

ପଡ଼ନ୍ତି ବା ସେମାନଙ୍କୁ ଛାଡ଼ି ପକାନ୍ତି । ଅଡୁଆ ଅସାଙ୍ଗଣା ଭେଣ୍ଡିଆ ଲୋକ । ଫୁଲର ମଧୁରସ ଶୋଷିବାପାଇଁ ତାଙ୍କ ମୁଖର ଗଠନ ଉପଯୁକ୍ତ ନୁହେଁ । ତେଣୁ ସେମାନେ ନିଜେ ନିଜେ ଫୁଲରୁ ବା ମଧୁଭାଣ୍ଡରୁ ମହୁ ଖାଇ ପାରନ୍ତି ନାହିଁ । ମଉଛବ ବେଳେ ସମସ୍ତେ ଯେତେବେଳେ ଆନନ୍ଦରେ ଭୋଳ, ସେତିକିବେଳେ ଓର ଉଣ୍ଡି ସେମାନେ ବାଟ ଓଗାଳନ୍ତି । ମଧୁରସରେ ପେଟ ପୂରେଇ ଶ୍ରମିକ ମହୁକ ଫେରିଲେ ତାରି ସାମନାରେ ବିକଳରେ ଭେଣ୍ଡିଆମାନେ ଜିଭ ପଟେଇ ଦିଅନ୍ତି । ମଧୁବାହୀ ମହୁକ ଟିକିଏ ଟିକିଏ ଚଟେଇ ଦିଏ । ଟିକିଏ ଟିକିଏ ଚାଟି ଭେଣ୍ଡିଆଙ୍କ



ପେଟ ସମ୍ଭଳା ହୁଏ । ସେମାନେ ଖାଦ୍ୟ ପାଇଁ ମଧ ଦାବୀ କରନ୍ତି ନାହିଁ । ତାଙ୍କର ଶ୍ରମିକମାନଙ୍କୁ ବଡ଼ ଡର । କାରଣ ଆତ୍ମରକ୍ଷା କରିବା ଅଥବା ଯୁଦ୍ଧ କରିବା ପାଇଁ ଶ୍ରମିକ ସମସରି ନାହୁଡ଼ ତାଙ୍କର ନାହିଁ । ତେଣୁ ଶ୍ରମିକମାନଙ୍କ ଦୟା ମାୟା ଉପରେ ନିର୍ଭର କରି ସେମାନେ ଚଳନ୍ତି । ଦୟନୀୟ ଅବସ୍ଥା । ମଧୁ ମାସରେ ମଧୁ ପ୍ରଚୁର । ତେଣୁ ଶ୍ରମିକମାନେ ଏବଂ ସେବିକାମାନେ ଶ୍ରମକାତର ଅଳସୁଆ ଭେଣ୍ଡିଆଙ୍କୁ ମଧୁ ପିଆଇବାରେ ବିମୁଖ ହୁଅନ୍ତି ନାହିଁ ।

ଆମ୍ବ ବଉଳୁଛି । ଗୋଟି ଗୋଟି ହୋଇ ଅନେକ ଗଛ । ଲକ୍ଷ ଲକ୍ଷ ଫୁଲ । ସେଥିରୁ ମଧୁରସ ଶୋଷି ନେବାକୁ ହଜାର ହଜାର ମହୁକ । ଅନବରତ ଲାଗି ସେମାନେ ମଧୁ ସଂଗ୍ରହ କରୁଛନ୍ତି । ମହୁକର ପେଟଟି ଟିକିଏ । ସେତିକି ସେ ପୂରେଇ ବୋହିନିଏ ମହୁମହଲକୁ । ସାଇତି ଦେଇ, ଟିକିଏ ନାଚି ପୁଣି ଫେରେ । ଦିନକରେ ସେ ହଜାର ହଜାର ଫୁଲରେ ବସେ, ରସ ଶୋଷେ । ଶ୍ରମିକ ମହୁକ ପ୍ରାୟ ୩ ସପ୍ତାହ ମଧୁ ସଂଗ୍ରହ କରିବା କାମ କରେ । ତା'ପରେ ତା ଜୀବନକାଳ ଶେଷ ହୁଏ । ନୂଆ ଶ୍ରମିକ ପୁଣି କାମ କରନ୍ତି । ସେହି କାଳ ମଧ୍ୟରେ ଗୋଟିଏ ମଧୁ ସଂଗ୍ରହକାରୀ ମହୁକ ପ୍ରାୟ ଅଧ ଚା-ଚାମଚ ମହୁ ସଂଗ୍ରହ କରିଥାଏ ।

ସବୁ ମହୁକ ମିଶି ପ୍ରାୟ ୩୭ ହଜାର ପେଟୀ ଫୁଲରସରୁ ଏକ ପାଉଣ୍ଡ ମହୁ ତିଆରି କରିଥାନ୍ତି । ଏହା ପଚିଶ ପଚାଶ ମହୁକର କାମ ନୁହେଁ । କେତେ ହଜାର ମହୁକଙ୍କର ଜୀବନବ୍ୟାପୀ କାମ । ସେତିକି କାମ ପାଇଁ ସେମାନଙ୍କୁ ସଂଗ୍ରହ କାର୍ଯ୍ୟରେ ଯେତିକି ଦୂର ଉଡ଼ିବାକୁ ହୁଏ, ତାହା କଳନା କରି ଗଣିଲେ ଜଣାଯାଏ ଯେ, ପୃଥିବୀ ଚାରିପଟେ ଦୁଇଥର ଘୂରିଲେ ଯାଇ ସେତିକି ପଥ ହେବ । ଆଶ୍ଚର୍ଯ୍ୟଜନକ ଆଚମ୍ବିତ କରଣି !

ଟିକି ଟିକି ପତଙ୍ଗ । ଅଳ୍ପ ଅଳ୍ପ କରି ଠୁଳରେ ସେମାନେ ଯେଉଁ ଅସାଧ ସାଧନ କରନ୍ତି, ତା'ର ପଟାନ୍ତର ନାହିଁ । ଅପେକ୍ଷା ନାହିଁ କି ଉପେକ୍ଷା ନାହିଁ । କାମ, କାମ, ଜୀବନବ୍ୟାପୀ କାମ । ମହୁକମାନେ ଟିକିଏ ଟିକିଏ ଫୁଲରସ ଆଣି ମହୁକୋଷରେ ଓକାଳି ଦିଅନ୍ତି । କ୍ରମେ ମହୁକୋଷ ପୂରେ । ଅନ୍ୟାନ୍ୟ ମହୁକୋଷ ମଧ ପୂର୍ଣ୍ଣ ହୁଏ । ତା ଉପରେ ସେମାନେ ଡେଣା ହଲେଇ ସେଥିରୁ ପାଣି ଉଡ଼େଇ ଦିଅନ୍ତି । ଫୁଲରସ ଘନ ହୋଇ ମହୁ ପାଲଟେ । ତା'ପରେ ସେମାନେ ମହୁକୋଷ ଉପରେ ମହଣର ଘୋଡ଼ଣି ଲଗେଇ ଦେଇ ସମ୍ପୂର୍ଣ୍ଣ ମୁଦ ଦେଇ ଦିଅନ୍ତି । ଭଣ୍ଡାର ଘର ପୂରି ପୂରି ରହେ । ମହୁମହଲ ବିଭବମୟ ଏବଂ ମହୁକ ଜୀବନ ଉଲ୍ଲସିତ । ସମଗ୍ର ପ୍ରକୃତି ମୁଗ୍ଧ ଚକିତ ।

## ତୋଫାନୀ ବୃଷ୍ଟି

ଉସବ ଉସାହ ମଧରେ ଆଜି ଛାଇ ପଡ଼ିଛି । ଅଜ୍ଞାତ ଅନାଗତ ଭୟ ଆଶଙ୍କାରେ ମହୁମହଲ ଆତୁର ହୋଇ ଉଠିଚି । ଦ୍ୱାରପାଳ ପ୍ରହରୀମାନେ ଅହେତୁକ ଭାବେ କ୍ରୋଧୀ ହୋଇଛନ୍ତି । କାହାକୁ ବାହାରକୁ ଛାଡୁ ନାହାନ୍ତି । ବାହାରୁ ଆସୁଥିବା ମହୁକମାନଙ୍କୁ ଟାଣିଆଣି ଭିତରକୁ ଠେଲି ଦେଉଛନ୍ତି । ଏହି କ୍ରୋଧ-ରିପୁ କ୍ରମେ

ସମୁଦାୟ ମହୁମହଲରେ କାୟା ବଢ଼ାଇ ଅନ୍ଧାର ପରି ବିଛେଇ ହୋଇଯାଇଛି । ଏହି କ୍ରୋଧ ବ୍ୟକ୍ତିଗତ ସ୍ୱାର୍ଥପର ଆକ୍ରୋଶ ନୁହେଁ । ଏହା ବିପଦର ସଙ୍କେତ; ସତର୍କ ଭାବ ।

ମହୁମହଲରେ ଧ୍ୱନି କ୍ରମେ ଅଧିକରୁ ଅଧିକ ଉଚ୍ଚ ହେଉଛି । ଖାଦ୍ୟସଂଗ୍ରହକାରୀ ମହୁକମାନଙ୍କୁ ଏହି ଧ୍ୱନି ଭୀତତ୍ରସ୍ତ କରି ଦେଇଛି । ତୁରନ୍ତ ସେମାନେ ଫେରି ଆସୁଛନ୍ତି । କେହି ଅଧା ପେଟୀ ମଧୁରସ ଆଣିଛି, କିଏ ବା ଖାଲି ଖାଲି ଫେରିଛି । ସେମାନଙ୍କ ଚଳଣି ବଦଳି ଯାଇଛି; ଅବାଗିଆ ହୋଇଛି । କାଣ୍ଡଜ୍ଞାନଶୂନ୍ୟ ନିର୍ବୋଧ ଗଧଡ଼ ପରି ସେମାନେ ଏଣେ ତେଣେ ରୁନ୍ଧି ହେଉଛନ୍ତି, ଝୁଣ୍ଟି ପଡୁଛନ୍ତି, କେଉଁଠି ହେଲେ ଛପି ଯିବାପାଇଁ ଚେଷ୍ଟା କରୁଛନ୍ତି । କାହା ମୁଣ୍ଡ କୋଷ-କାନ୍ଥରେ ବାଡେ଼ଇ ହେଲାଣି ତ କିଏ ଖୋଲା ମହୁକୋଷ ମଧରେ ପଡ଼ିଗଲାଣି । କେତେ ଭୟରେ ଥରି ଥରି ଅନିଶ୍ଚିତ ବିପଦରୁ ତ୍ରାହି ପାଇବା ପାଇଁ ମହୁକୋଷରୁ ପେଟଭରା ମହୁ ପିଇ ଦେଲେଣି । ସତେଯେପରି ମହୁମହଲରେ ପ୍ରଳୟ ସଂହାର ଖେଳିଯିବ, ମହୁମହଲ ଧ୍ୱଂସ ପାଇଯିବ ! ଭୟଭୀତ ମହୁକମାନଙ୍କ ମେଳିରୁ ଅଧିକ ତାତି ନିର୍ଗତ ହେଉଛି । ତେଣୁ ପଙ୍ଖାକାରୀ ସେବିକାମାନେ ଅଧିକ ପରାକ୍ରମରେ ପକ୍ଷଚାଳନା କରି ମହୁମହଲର ବଢ଼ିଲା ତାପମାନ କମେଇବାରେ ଲାଗିଛନ୍ତି ।

ବାହାରେ ପ୍ରକୃତିର ରୂପ ମଧ ବଦଳି ଯାଇଛି । ବାୟୁ ସଞ୍ଚାଳନ ସ୍ଥିର ହୋଇଯାଇଛି । ତାତି ବଢ଼ିଛି । ପବନ ବହଳ ହୋଇଛି ଜଳ ଭାର ବହନ କରି । ଅପରାହ୍ନର ନିଥର ଆକାଶରେ ଦକ୍ଷିଣ ପଶ୍ଚିମାଞ୍ଚଳରୁ ଖଣ୍ଡିଏ କଳାହାଣ୍ଡିଆ ମେଘ ମାଡ଼ି ଆସିଲା । ଧୂଳି ଶୁଖିଲା ପତ୍ର ଉଡ଼େଇ ଝଞ୍ଜା ବୋହିଲା । କଳାମେଘ ଘୋଟିଗଲା । ଚକ୍ ଚକ୍ ବିଜୁଳି ଚମକିଲା । ଘଡ଼ଘଡ଼ି ଗର୍ଜିଲା । ତୀର ବେଗରେ ମେଘରୁ ବାରିଧାରା ଝରି ପଡ଼ିଲା ।

ମହୁମହଲ ଭିତରେ ଫେଣା ଉପରେ, ଫଣୀ କଳାନାଗ ପରି, ମହୁକ ସମୂହର ଗର୍ଜନ ଫୁଲି ଫୁଲି ଉଠୁଥିଲା ଏବଂ ଚକ୍ର ଭାଙ୍ଗୁଥିଲା । ତାହା ଏବେ ମୁଣ୍ଡମାଡ଼ି ସଙ୍କୁଚିତ ହୋଇ ପଡ଼ିରହିଲା । ପୂରା ତୋଫାନ ଏବଂ ବର୍ଷା ଅବଧି ସେମାନେ ସେହିପରି ନିସ୍ତେଜ ହୋଇ ପଡ଼ି ରହିଲେ । ମନେ ହେଉଥିଲା ଯେପରି ନିଃଶ୍ୱାସ ନେବାକୁ ସେମାନେ ସମର୍ଥ ନୁହନ୍ତି; ନିର୍ଜୀବ, ଅଥର୍ବ ।

କ୍ରମେ ବର୍ଷା ଶେଷ ଟପ ଟପ ପାଣି ଫିଙ୍ଗିଦେଇ ବନ୍ଦ ହୋଇଗଲା । ବିଜୁଳି ଘଡ଼ଘଡ଼ି ଚମକ ଦୂର ପାହାଡ଼ ପଛପଟେ ଛପିଗଲା । ତାଳପତ୍ରରୁ ଯାହା ଟୋପା ଟୋପା ପାଣି ଖସୁଛି । ଅନ୍ଧାର ଭିତରେ ଟର୍ଚ୍ଚ ଲାଇଟ୍ ଟିପିଲେ ଯେପରି ଆଲୋକ

ତାଲା ଫୁଲଚାଙ୍ଗୁଡ଼ା ପରି ଝଲସି ଉଠେ, ସେହିପରି ମେଘ ଭିତରୁ ଆଲୋକ ଫାଟିପଡ଼ି ବିଞ୍ଚି ହୋଇଗଲା । ସଙ୍ଗେ ସଙ୍ଗେ ପୂର୍ବପଟେ ଆକାଶ ଆବୋରି ପାହାଡ଼ରୁ ପାହାଡ଼ ଲମ୍ବି ଏକ ଅପୂର୍ବ ସୁନ୍ଦର ଇନ୍ଦ୍ରଧନୁ ସାତରଙ୍ଗର ପଟିରେ ବିଛେଇ ହୋଇଗଲା ।

ପ୍ରକୃତିରେ ରୋମାଞ୍ଚ ଖେଳିଗଲା । ବିସ୍ମୟ-ବିସ୍ଫାରିତ ନେତ୍ରରେ ସେହି ସୁନ୍ଦର ସୁଷମା ଦେଖୁଛି ଶଶ, ମୃଗଶିଶୁ ଏବଂ ହଳଦୀବସନ୍ତ । ଅପ୍ରତିହତଭାବେ ମହୁକ ମନ ନୟନରେ ଆକର୍ଷଣ ଲାଗିଲା । ବିମୂଢ଼ ହୋଇ ମହୁକମାନେ ମହୁମହଲରୁ ଚରଳଗୁଡ଼ ବୋହିଗଲା ପରି ବାହାରି ଆସିଲେ । ଦ୍ୱାର ଆଗରେ ତାଳମଞ୍ଚ ଉପରେ ସ୍ଥିରହୋଇ ଏକ ମୁଖରେ ବସିରହି ଦେଖିଲେ ସେହି ଶୋଭା । ସବୁଠୁଁ ଆଶ୍ଚର୍ଯ୍ୟ ଘଟଣା ହେଲା ଯେ, ସେମାନେ ନିର୍ବାକ୍ ଓ ନିଃଶବ୍ଦ । ସେମାନଙ୍କ ସଙ୍ଗୀତ ଯେପରି ଶେଷ ହୋଇଯାଇଛି । ଗୁଞ୍ଜନ ବନ୍ଦ, ପକ୍ଷ ମଧ ବନ୍ଦ । ସେମାନେ କେବଳ ସେହି ତାଳବକଳ-ଚଉତରା ଉପରେ ଚୁପ୍‌ଚାପ୍ ଏକତ୍ର ବସି ରହିଛନ୍ତି ଆଉ ଆକାଶ ବକ୍ଷରେ ରଚିତ ହୋଇଥିବା ସେହି ଅପ୍ସରା-ରାଜ୍ୟର ସୌନ୍ଦର୍ଯ୍ୟ ତୋରଣକୁ ଚାହିଁ ରହିଛନ୍ତି ।

ଧୀରେ ଧୀରେ ସେହି ମହାନ ରଙ୍ଗିଲା ପୋଲ ଉଭେଇଗଲା । କଳା ପାଉଁଶ ରଙ୍ଗର ମେଘ ଭାଙ୍ଗି ଭାଙ୍ଗି ଗଲା । ତା ପଛରେ ଚିକ୍କଣ ନୀଳରଙ୍ଗର ଆକାଶ ଉଙ୍କି ମାରିଲା । କୁହୁକ ଆବେଶ ମିଳେଇଗଲା । ମହୁକମାନେ ସଚେତ ହେଲେ, ବେଗାବେଗି ହୋଇ ମହୁମହଲ ଭିତରେ ପ୍ରବେଶ କଲେ । ମହୁମହଲ ମଧ୍ୟରେ କର୍ତ୍ତବ୍ୟର ଆହ୍ୱାନ ପୁଣି ଶୁଣାଗଲା । ଗୁଞ୍ଜରଣ ଅଧିକରୁ ଅଧିକ ହେଲା । କାମର ଭେଦ ଏବଂ ବେଗ ବଢ଼ିଲା । ଆସ୍ତେ ଆସ୍ତେ ରାତ୍ରିର ଅନ୍ଧକାର ପୁଣି ବନଭୂମି ଅଧିକାର କଲା । ଶିଆଳର ହୁକେ ହୋ ଏବଂ ପେଚାର ହୁଟ୍ ହୁଟ୍ ଶବ୍ଦରେ ମଖମଲୀ ଅନ୍ଧାର ଚିରିଚିରେଇ ଗଲା । ଏଣେ ମହୁମହଲ ଭିତରେ ଗୁଞ୍ଜରଣ କମି କମି ଗଲା ।

ଉଚ୍ଛଳ ବସନ୍ତ କାଳ । ଭରପୂର ମହୁମହଲ । ଅରଣ୍ୟରେ ବୃକ୍ଷେ ବୃକ୍ଷେ ଶୋଭା ଶିରୀ ସମ୍ପଦ ଉଚ୍ଛୁଳି ପଡୁଛି । ଗଗନ ପବନ ସୁଗନ୍ଧ ଓ ସଙ୍ଗୀତରେ ଋଦ୍ଧି ହୋଇଛି । ମହୁମହଲର ଭଣ୍ଡାର ମହୁ ଏବଂ ଫୁଲ-ପରାଗରେ ପରିପୂର୍ଣ୍ଣ । ଚତୁଃପାର୍ଶ୍ୱରେ ନିତି ପ୍ରତି ନୂଆ ନୂଆ ବୃକ୍ଷଲତାରେ ଫୁଲ ଫୁଟୁଛି । ମହୁକମାନଙ୍କ କାମ ଓ ସମ୍ପଦ ଓଜାଡ଼ି ହୋଇ ପଡୁଛି ।

ସୁଖ-ସମ୍ପଦରେ ମହୁମହଲ ସବୁକାଳକୁ ବଳେଇ ଯାଇଛି । ଭିତ୍ତି ନିକଟସ୍ଥ ସବୁ କୋଠରୀରେ ଜାତି ଜାତି ଫୁଲର ସୁବାସିତ ମହୁ ସାଇତା ହୋଇ ରହିଛି ।

ତା ତଳକୁ ମହୁ-ପିଠା ଭଣ୍ଡାର । ବିଭିନ୍ନ ଫୁଲରୁ ପରାଗ ବୋହିଆଣି ମହୁକମାନେ ଅଲଗା ଅଲଗା ସେଗୁଡ଼ିକ ସାଇତି ରଖିଛନ୍ତି । ତା ଉପରେ ମଧ ପତଳା ମହଣ ଆବରଣ ଦିଆଯାଇଛି । ମୁଦା ହୋଇଛି । ମୁଦ ତଳୁ ମଧ ମହୁ-ପିଠାର ସରସ ସୁଠାମ ରଙ୍ଗ ବାରି ହେଉଛି । କେଉଁଠି ନାଲି ରଙ୍ଗ, କେଉଁଠି ନାରଙ୍ଗୀ ରଙ୍ଗ, କେଉଁଠି କମଳା ରଙ୍ଗ, କେଉଁଠି ବା ବାଦାମୀ ରଙ୍ଗ । ହରେକ ରଙ୍ଗ । ସୁଘଞ୍ଚ ସୁସଞ୍ଚ ଭାବରେ ସବୁ ସଜଡ଼ା ହୋଇ ରହିଛି । ମାସ ମାସ ବସି ଖାଇଲେ ବି ସରିବ ନାହିଁ । ପ୍ରାୟ ସଉଆ ଏକଲକ୍ଷ କୋଷରେ ଖାଦ୍ୟ ମହଜୁଦ ଅଛି ।

ମହୁମହଲରେ ମହଲା ତିଆରି ମଧ ଚାଲିଛି । ରାଣୀମା ଅଣ୍ଡା ଦେଇ ଦେଇ ଯାଉଛି । ସେଥିରୁ ପୋକ ହେଉଛନ୍ତି । ସେମାନଙ୍କ ସେବାରେ ସେମାନଙ୍କୁ ଖୁଆଇବାରେ ସେବିକାମାନେ ଲାଗିଛନ୍ତି । ପ୍ରାୟ ୫୦ ହଜାର କୋଷରେ ଶିଶୁ ବିଭିନ୍ନ ଅବସ୍ଥାରେ ବଢୁଛନ୍ତି । କାମରେ ବିରାମ ନାହିଁ । ବିଶ୍ରାମ ନେବାକୁ ବା ତର କାହିଁ ?



ତେବେ ଏତେ କାମ ଭିତରେ, ଏତେ ଜୀବନ ଭିତରେ, ଏତେ ଉତ୍ସବ ଭିତରେ ଆଜି ଏକ ନୂଆ ଭାବ ଆସି ସମସ୍ତଙ୍କୁ ଘାରି ଦେଇଛି । ଗୋଟାଏ ଆନମନା ଭାବ । ଏକ ଅଥୟ ଭାବ । ଅନିଶ୍ଚିତ ଅସହାୟ ଭାବ ।

ଏତେ କାଳ ସବୁ ନିଖୁଣ ଠିକ୍ ଭାବେ ଚାଲିଥିଲା । ରାଣୀମା ଭଲ ଅଛି ତ ସବୁ ଭଲ । ସେଇ ଏକା ମହୁମହଲରେ ଯେତେ ଯେତେ ଅଧିବାସୀ ସମସ୍ତଙ୍କର ଜନ୍ମଦାତ୍ରୀ ମା । ତାରି ଇଚ୍ଛାରେ ତାରି ନିର୍ଦ୍ଦେଶରେ ତାରି ଇଙ୍ଗିତରେ ସବୁ ଚାଲିଥିଲା ।

କାମର ଧାରା ଲାଗିଥିଲା । ମହୁମହଲରେ ଶୃଙ୍ଖଳା ଥିଲା, ସୁଖ ସାଧ ବଢୁଥିଲା । ମା ହୋଇ ବି ସେ ଥିଲା ଶାସନକାରିଣୀ ରାଣୀ । ତେଣୁ ସେ ରାଣୀମା । ତାକୁଇ କେନ୍ଦ୍ରକରି ମହୁକ ଗୋଷ୍ଠୀ, ମହଲ ଏବଂ ଜୀବନ । ସେଇ ପ୍ରକୃତରେ ମହୁକର ଜୀବନ । ମହୁକ ରାଣୀମାର ସେବା କରୁଥାଉ ବା ଦୂରରେ ଥାଇ ଫୁଲରସ ପରାଗ ତୋଳୁଥାଉ, ରାଣୀମା ସହିତ ତା'ର ସୂକ୍ଷ୍ମ ଯୋଗସୂତ୍ର ଲାଗିଥାଏ । ଏବେ ସେଇ ଯୋଗାଯୋଗ ଛିଡ଼ିଗଲା ପରି ଲାଗୁଛି ।

ରାଣୀମା ପ୍ରତି ସଭିଙ୍କର ପତିଆରା କମିଯାଇଛି । ରାଣୀମା'ଙ୍କ ଇଚ୍ଛା ଏବେ ସମଗ୍ର ଗୋଷ୍ଠୀର ଇଚ୍ଛା ନୁହେଁ । ଗୋଷ୍ଠୀ ରାଣୀମା-ପ୍ରଭାବରୁ ମୁକୁଳି ଯାଇଛି । ରାଣୀତନ୍ତ୍ର ବଦଳରେ ମନେ ହେଉଛି ଗଣତନ୍ତ୍ର ଭାବ ପ୍ରକାଶ ପାଇଛି । ସେବିକାମାନେ ଶ୍ରମିକାମାନେ ସୈନ୍ୟମାନେ ସମସ୍ତେ ମିଳିମିଶି ସ୍ୱତନ୍ତ୍ର ସଂସ୍ଥା ଗଢ଼ିବାକୁ ଠିକ୍ କରିଛନ୍ତି । ପୁରୁଣା ରାଣୀମା ଦେଇ ଆଉ ଗୋଷ୍ଠୀ ଚଳି ପାରିବ ନାହିଁ । ଗୋଷ୍ଠୀ ନୂଆ ରାଣୀ ବାଛିବ । ସେଇଥିପାଇଁ ମହୁମହଲ ଭିତରେ ନୂଆ ଢଙ୍ଗ, ନୂଆ ଭାବ, ନୂଆ କାମ ଆରମ୍ଭ ହୋଇଛି ।

ସବୁ ମହୁକ ଏକାଠି ସଭାରେ ମିଳି କ'ଣ ବିଚାର ସାର କରି କିଛି ଠିକଣା କଲେ ? ନା, ମହୁମହଲରେ ସେ ପ୍ରକାର ତର୍କସଭା ବସେ ନାହିଁ । ତାଙ୍କର ଏକରୁ ଅଧିକ ବିଚାର ନାହିଁ । ଅଥଚ ସମସ୍ତଙ୍କୁ ନୂଆ ଭାବ ଏକ କାଳରେ ଆଚ୍ଛନ୍ନ କରିଛି । ଏହି ଅଦ୍ଭୁତ, ଅପୂର୍ବ ପରିବର୍ତ୍ତନ ମୂଳରେ ନିହିତ ଅଛି ଗୋଠ-ଭାବ । ସେଥିରେ ବ୍ୟକ୍ତିବିଶେଷର ସ୍ଥାନ ନାହିଁ । ଜଣେ ଜଣେ ହୋଇ କେହି କିଛି କରେ ନାହିଁ । ସମସ୍ତେ ମିଳି କାମ କରିଯାଆନ୍ତି । ଯେଉଁ କାମକୁ ଯିଏ ସମର୍ଥ, ସେଇ ସେଥିରେ ଲାଗିଯାଏ । ରାଣୀମା ଯେ ଶାସନ କରେ, ସେ କ୍ଷମତା ମଧ୍ୟ ଗୋଠ-ଭାବରୁ ମିଳିଥାଏ । ଗୋଠର ଭଲ ପାଇଁ ସେପ୍ରକାର ବନ୍ଦୋବସ୍ତ । ଯେଉଁଥିରେ ଗୋଠର ଶୁଭ ଏବଂ ଲାଭ ତାହା ଗୋଠ ଗ୍ରହଣ କରିଯାଏ । ସେଥିରେ ବାଦ ବିବାଦ ନ ଥାଏ । ଏହା ମହୁମହଲର ଆତ୍ମିକ ଗୁଣ ବା ସହଜାତ ଗୁଣ । ଚମତ୍କାର ବ୍ୟବସ୍ଥା !

ମହୁମହଲରେ ଦୁଃଖ ନାହିଁ, ଦୈନ୍ୟ ନାହିଁ, ଅଭାବ ନାହିଁ କିମ୍ବା ଅସୁବିଧା ନାହିଁ । ସୁଖ ସମ୍ପଦ ଚରମ ସୀମାରେ ପହଞ୍ଚିଛି । ଐଶ୍ୱର୍ଯ୍ୟର ଲାବଣ୍ୟ ମହୁମହଲର ସର୍ବତ୍ର ବିରାଜିତ । ସେତିକିବେଳେ ଗୋଠ-ଭାବ ନିର୍ଦ୍ଦେଶ ଦେଲା ଯେ, ଏଇ ରାଜ୍ୟ ଛାଡ଼ି ଅନ୍ୟ ରାଜ୍ୟ ବସେଇବାକୁ ହେବ । ନୂଆ ଗଡ଼ ଗଢ଼ିବାକୁ ହେବ । ନୂତନ ମହୁମହଲ ପ୍ରତିଷ୍ଠା କରିବାକୁ ହେବ । ଏହା ମହୁମହଲର ମର୍ମବାଣୀ । ଏହା ପାଳନ କରାଯିବ । ନୂତନ ମହୁମହଲ ଗଢ଼ିବାପାଇଁ ପୁରୁଣା ମହୁମହଲ ଓ ତା' ସହିତ

ସମସ୍ତ ନିଶ୍ଚିତ ଐଶ୍ୱର୍ଯ୍ୟ, ଲାବଣ୍ୟ, ବିଭବ, ତ୍ୟାଗ କରିବାକୁ ହେବ । ସେଥିପାଇଁ କାହାରି ମନରେ ଅବସାଦ ନାହିଁ, ଉଦାସୀନତା ବା ଦୁଃଖ ନାହିଁ । ମହୁମହଲରେ ବିତ୍ତ ଅପେକ୍ଷା ଚିତ୍ତର କଦର ଅଧିକ । ତେଣୁ ଚିତ୍ତର ବିଜୟ ।

କଥାରେ କହନ୍ତି "ଝିଅକେ ବର, ଭାଇକେ ଘର ।" ତା ଅର୍ଥ ଯେତେ ଝିଅ ସେତିକି ବର ଏବଂ ଯେତେ ଭାଇ ସେତେ ଘର । କନିଆଁ ଗୋଟିକୁ ବର ଗୋଟିଏ, ଭାଇ ଗୋଟିକୁ ଘର ଗୋଟିଏ । ମାତ୍ର ମହୁମହଲରେ ସେଭଳି ବ୍ୟକ୍ତିଗତ ସ୍ୱାର୍ଥର ଆଭାସ ମଧ ନାହିଁ । ସତୁରି ଅଶି ହଜାର ମହୁକ ଏକତ୍ର ମିଳି ଠୁଳରେ ବଢ଼ନ୍ତି । ତାଙ୍କ ଭିତରେ ରାଣୀମା ଏକମାତ୍ର ବିବାହିତା କନିଆଁ । ଅଧିକରେ ପୁଣି ସେ ବିଧବା । ବାହାଦିନ ବର ତା'ର ମରିଛି । ତେବେ ସେହି ରାଣୀମା ସମସ୍ତଙ୍କୁ ଗଢ଼ି ବଢ଼େଇ ଆଣିଛି ।

ବସନ୍ତ ସହିତ ଏକ ନୂତନ ଜୀବନ-ଜୁଆର ଜୀବଜଗତରେ ଫୁଲି ଉଠିଛି । ନୂଆ ଶିହରଣ ଜୀବନରେ ଲାଗିଛି । ମହୁମହଲରେ ବାସନ୍ତୀ ଜୁଆର ଯୋଗୁଁ ଜୀବସଂଖ୍ୟା ବହୁ ଗୁଣରେ ବଢ଼ି ଯାଇଛି । ମହୁମହଲ ଭିତରେ ଆଉ ଜାଗା ବି ନାହିଁ । ମହୁ ବା ପରାଗ-ପିଠା ସାଇତିବା ପାଇଁ ଆଉ ଭଣ୍ଡାର ନାହିଁ । ଏତେ ଗହଳି ଚହଳି ବଢ଼ିଗଲାଣି ଯେ, ବେଳେବେଳେ ଖାଦ୍ୟବାହୀ ମହୁକଟିଏ ସରସ ସୁବାସିତ ଫୁଲମଧୁ ଘେନି ଫେରିଲେ ବି ସେ ଖାଲି ମଧୁଭାଣ୍ଡ ପାଖରେ ପହଞ୍ଚି ପାରୁ ନାହିଁ । ଅଣ୍ଡିରା ଭେଣ୍ଡିଆ ଦଳଙ୍କ ସଂଖ୍ୟା ବି ଖୁବ୍ ବଢ଼ି ଯାଇଛି । ସେମାନେ ଖାଇ ପିଇ ଢଳିଲା ବଳିଲା ହୋଇ, ଚହଟ ଚିକ୍କଣ ହୋଇ ଭାଟୁଆ ପାଟିରେ ଗୀତ ଗାଇବାରେ ଲାଗିଛନ୍ତି । ଦୁଆର ମୁହଁରେ ସେହି ନାଗରମାନେ ଭିଡ଼ କରୁଛନ୍ତି । ବେଳେବେଳେ ତାଙ୍କ ଗୋଳଯୋଗୁଁ କେହି କେହି ମହୁକ ମହୁମହଲ ଭିତରକୁ ପଶି ବି ପାରୁ ନାହିଁ । ବାହାରେ ବାହାରେ ରହିବାକୁ ବାଧ ହେଉଛି । ରାତିରେ ଥଣ୍ଡା କାକରରେ ବିଚାରୀ ମରି ବି ଯାଉଛି । ତେଣୁ ଗୋଠର ଅକୁହା ଅଲେଖା ନିଷ୍ପତ୍ତି ଯେ, ଗୋଠ ଭଙ୍ଗାଯିବ । ଗୋଠ ଭଙ୍ଗାଯିବ, ଗୋଠ ଭଙ୍ଗାଯିବ, ଏଇ ଭାବ ସମସ୍ତଙ୍କୁ ଏକ ସମୟରେ ଛୁଇଁ ଦେଇଛି କୁହୁକ ପରି । ଆଚମ୍ବିତ ବିଧିବିଧାନ । ବିଚିତ୍ର କୁଳଧର୍ମ ।

## ଢେମାଦେଈ ଜନ୍ମ

ଗୋଠ ଭାଙ୍ଗିବାର ପ୍ରଥମ ସଙ୍କେତ ସ୍ୱରୂପ ଢେମାଦେଈପୁର ମହୁମହଲ ଭିତରେ ଗଢ଼ାଗଲା । ମହଣରେ ମହୁମହଲ ଗଢ଼ା । ସେହି ମହଣ ପ୍ରସ୍ତୁତ କରନ୍ତି ଯୁବ ମହୁକମାନେ । ବସନ୍ତ ଋତୁରେ ସେମାନଙ୍କ କାମ ଅଧିକ । ଭଣ୍ଡାର ଘର, ଶିଶୁଭବନ, କିଶୋର କେନ୍ଦ୍ର ପାଇଁ ନୂଆ ନୂଆ କୋଠାଘର ଦରକାର । ପ୍ରାଣାନ୍ତକ ପରିଶ୍ରମ

କରି ସେମାନେ ନିଜ ଦେହରୁ ମହଣ କାଢ଼ି ନୂଆ ମହଲ ଓ ପୁରୁଣା ମହଲରେ ଅଧିକା କୋଠରୀ ଗଢ଼ିବାରେ ଲାଗିଛନ୍ତି । ଦଣ୍ଡେ ତର ନାହିଁ । ତଥାପି ଏତେ କାମ ଭିତରେ ସେମାନେ ଢେମାଦେଈପୁରର ଶୁଭ ଦେଇଛନ୍ତି ।

ମହୁମହଲ ଭିତରେ ଯେଉଁ ଅଞ୍ଚଳ ସର୍ବାଧିକ ନିରାପଦ, ସେହିଠି ଢେମାଦେଈପୁର ତୋଳା ହେଉଛି । ଖରା କାକର ଯେଉଁଠି ପଡ଼ିବ ନାହିଁ, ଶୁଖିଲା ବା ଓଦା ପବନ ଯେଉଁଠି ବହିବ ନାହିଁ, ଗରମି ବା ହେମାଳ ଯେଉଁଠି ବାଜିବ ନାହିଁ, ଯେଉଁଠି ପୁଣି ଶତ୍ରୁ ଭୟ ଅତି ଅଳ୍ପ, ସେହିପରି ଥାନରେ ସୁନ୍ଦର ଚିକ୍‌କଣ କରି ଢେମାଦେଈପୁର ଗଢ଼ାଯାଉଛି । ଅତି ପାରିବାର କାରିଗର ସେ କାମ କରୁଛନ୍ତି ।

ମହୁମହଲ ଭିତରେ ସାହାଲା ସାହାଲା ହୋଇ ସବୁ କୋଠା ତଳକୁ ଝୁଲିଛି । ଦ୍ୱାରଦେଶର ବିପରୀତ ପାର୍ଶ୍ୱରେ ମଝି ସାହାଲା ଧାରରେ ଢେମାମାନଙ୍କ ପାଇଁ ଅନ୍ତୁଡ଼ିଶାଳା ଗଢ଼ାଯାଉଛି । ଏହା ସାଧାରଣ ଅନ୍ତୁଡ଼ିଶାଳା ନୁହେଁ । କୁଳରକ୍ଷାକାରିଣୀ ଭବିଷ୍ୟତ ରାଣୀଙ୍କ ଅନ୍ତୁଡ଼ିଶାଳା । ତେଣୁ ଏହା ମନ୍ଦିର ଭଳି ସୁନ୍ଦର ସୁଶୋଭିତ କରାଯାଇଛି ।



ଗୁଆଫଳ ଆକାରର ପ୍ରାୟ ଅଢ଼େଇ ସେଣ୍ଟିମିଟର ଲମ୍ବର ଉଜ୍ଜ୍ୱଳ ଚମ୍ପାଫୁଲିଆ କୋଠରୀ । ତା ଉପରେ କୁଟିକମ କରାଯାଇଛି । ସତେଯେପରି କନକ ମର୍ମର ପଥରରେ ତିଆରି ଗମ୍ବୁଜ ଉପରେ ଗୁପ୍ତାକ୍ଷରରେ କୁହୁକ ମନ୍ତ୍ର ଲେଖାଯାଇଛି । ତାହାକୁ ଚାରୁ ଚିତ୍ରଶାଳା କହିଲେ କିଛି ଭୁଲ୍ ହେବ ନାହିଁ । ତା ଭିତର ପୁଣି ମସୃଣ ଚିକ୍କଣ ହୋଇ ରାଜଭୋଗ୍ୟ ଅମୃତରେ ଭରି ଦିଆଯାଇଛି ।

ମହୁକ ଅମୃତ, କେବଳ ନାମମାତ୍ର ଅମୃତ ନୁହେଁ । ପ୍ରକୃତରେ ନାମ ଘେନି ତା'ର ଗୁଣ । ଏହା ଦୀର୍ଘଜୀବୀ କରାଏ, ବନ୍ଧ୍ୟାଦୋଷ କାଟିଦିଏ ଏବଂ ଅମରମରା କରାଏ । ବନ୍ଧ୍ୟାଦୋଷରେ ଦଣ୍ଡିତ ମୂଷା ଏବଂ ପ୍ରଜନନ-ଅସମର୍ଥ ମୂଷାମାନଙ୍କୁ ଏହା ଖୁଆଇଲେ ଅତି ଆଶ୍ଚର୍ଯ୍ୟ ଭାବରେ ସେମାନେ ପୁଣି ପିଲା ପ୍ରସବ କରିପାରନ୍ତି । ନପୁଂସକ ପୁରୁଷତ୍ୱ ଫେରିପାଏ । ଲୁପ୍ତଲିଙ୍ଗୀ ଜୀବୀକୁ ଖୁଆଇଲେ ଲିଙ୍ଗ ଉଦୟ ହୁଏ । ଯେକୌଣସି ମହୁକ-ଶାବକକୁ ଏହି ଅମୃତ ଖୁଆଇଲେ ସେ ନିର୍ଲ୍ଲିଙ୍ଗୀ ମହୁକ ନ ହୋଇ ସ୍ୱାଭାବିକ ଭାବେ ତା'ର ସ୍ତ୍ରୀଲିଙ୍ଗ ବିକଶିତ ହୁଏ ଏବଂ ସେ ଏକ ରାଜଜେମା ହୋଇଯାଏ । ଅମୃତର ଚମତ୍କାର କ୍ଷମତା । କିନ୍ତୁ ଦୁଃଖର କଥା, ଏଡ଼େ ଗୁଣର ଏହି ଅମୃତ କି କି ଉପାଦାନରେ ଗଠିତ, ତାହା ବୈଜ୍ଞାନିକମାନେ ବିଶ୍ଳେଷଣ କରିପାରି ନାହାନ୍ତି । ତେଣୁ ତାହା ବହୁଳଭାବେ ବାହାରେ ତିଆରି କରି ହେଉନାହିଁ । ହେଲେ ମଣିଷ-ସମାଜରୁ ଏବଂ ତାର ଗୃହପାଳିତ ପଶୁଙ୍କଠାରୁ ଅକର୍ମଣ୍ୟ ବନ୍ଧ୍ୟାଦୋଷ ଦୂର ହୋଇଯିବ । ବାର୍ଦ୍ଧକ୍ୟ ଘୁଞ୍ଚି ଘୁଞ୍ଚି ଯିବ । ଯୁବାକାଳ ବଢ଼ିଯିବ ।

ସାଧାରଣ କୋଷରେ ରାଣୀମା ଯେଉପରି ଡିମ୍ବଟିଏ ପାରିଦିଏ, ରାଜଜେମାଙ୍କ ପାଇଁ ପ୍ରସ୍ତୁତ, ମୋତି-ଚିତ୍ରିତ ସୁନାଫରୁଆରେ ମଧ୍ୟ ସେହିପରି ଡିମ୍ବଟିଏ ପାରିଦିଏ । ଡିମ୍ବ ଡିମ୍ବ ଭିତରେ ଗୁଣଗତ କୌଣସି ପାର୍ଥକ୍ୟ ନାହିଁ । ଡିମ୍ବ ଅଦଳ ବଦଳ କଲେ ବି ପରିଣାମ ଓଲଟ ପାଲଟ ହୁଏନାହିଁ । ସାଧାରଣ କୋଷରେ ବଢ଼ିବା ଶିଶୁ ସେବିକା ହୁଏ । ସୁନା ଫରୁଆରେ ଅମୃତ ମଣୋହି କରି ବଢ଼ିବା ଶିଶୁ ରାଜଜେମା ହୁଏ, ବିବାହ କରେ, ପ୍ରସବ କରେ, ରାଣୀମା ହୋଇ ରାଜୁତି କରେ । ଆସନ, ଅଶନ ଭୂଷଣର ପାର୍ଥକ୍ୟ ଯୋଗୁଁ ପୋଷତ ହେବାରେ ଏତେ ପ୍ରଭେଦ ହୋଇଯାଏ । ରାଜକୋଷରେ ଦିଆଯାଇଥିବା ଡିମ୍ବଟିକୁ ଯତ୍ନରେ କାଢ଼ିନେଇ ହଜାର ହଜାର ସଂଖ୍ୟାରେ ଗଢ଼ା ଯାଇଥିବା ସାଧାରଣ କୋଷରେ, ଜନକୋଷରେ ରଖିଦେଲେ ସେଥିରୁ ଫୁଟିବା ଶିଶୁ ସାଧାରଣ ପାଳନ ପାଏ ଏବଂ ବାଇଶି ଦିନରେ ବନ୍ଧ୍ୟା ସେବିକାରେ ପରିଣତ ହୁଏ । ଅଥଚ ସାଧାରଣ କୋଷରୁ ଡିମ୍ବଟିଏ କାଢ଼ିନେଇ ସ୍ୱତନ୍ତ୍ର ରାଜ-କୋଷରେ ରଖିଲେ ସେଥିରୁ ବାହାରେ ସୁଠାମ ସୁନ୍ଦର ରାଜଜେମା, ମାତ୍ର ଷୋଳ ଦିନରେ । ସେଇ ହିଁ ହେଉଛି ମହୁମହଲରେ ମହୁକ ରାଜ୍ୟରେ

ସର୍ବଶକ୍ତିମୟୀ ଅତୁଳନୀୟା ସୃଷ୍ଟି-ସ୍ଥିତି-ସଂହାରକାରିଣୀ ଦେବୀ ଦୁର୍ଗା, ରାଜକୁମାରୀ । ମହୁକ ବୟସ ତୁଳନାରେ ସେ ଚିରଜୀବୀ, ଅନନ୍ତଯୌବନା । ତା'ର ଜୀବନକାଳ ମଧ୍ୟରେ ସେ ତା'ର ସୁକୁମାର ଲଳିତ ଅଙ୍ଗରୁ ଲକ୍ଷାଧିକ ସନ୍ତାନ ପ୍ରସବ କରିପାରେ । ମା ନାମର ମହିମା ସାର୍ଥକ କରିବାରେ ମହୀମଣ୍ଡଳରେ ତା ସମକକ୍ଷ ଆଉ ଅନ୍ୟ କେହି ନାହିଁ । ଇଏ କୁହୁକ ମନ୍ତ୍ରର ଭେଳିକି ନୁହେଁ ତ ଆଉ କ'ଣ ?

ଅବଶେଷରେ ଶୁଭଲଗ୍ନ ଦିନ ଆସିଲା । କୋଇଲି, କପୋତ, କୁମ୍ଭାଟୁଆ ଓ କୁକୁଡ଼ାଙ୍କର ମିଳିତ ଆବାହନ-ସଙ୍ଗୀତରେ ବନସ୍ଥଳୀ ଉଲ୍ଲସିତ ହେଲା । ସକାଳ ସୂର୍ଯ୍ୟଙ୍କ କୁହୁକୀ କିରଣ ଘାସ ଓ ପତ୍ରରେ ଲାଗି ସବୁ ସୁନା କରିଦେଲା । ମାତ୍ର ପତ୍ରଧାରରେ ଢଳ ଢଳ ହେଉଥିବା ଶିଶିରବିନ୍ଦୁଗୁଡ଼ିକରେ କନକ ଆଲୋକ ଝଲକ ପଡ଼ି ସେଗୁଡ଼ିକୁ ସାତ ରଙ୍ଗର ମୋତି ମଣିରେ ପରିଣତ କରିଦେଲା । କଞ୍ଚନ ପଳାଶ ଆଦି ବୃକ୍ଷରେ ଫୁଲ ଏବଂ ପକ୍ଷୀମାନଙ୍କ ରଙ୍ଗସଭା ଆରମ୍ଭ ହେଲା । ମଳୟର ହିଲ୍ଲୋଳରେ ମଧୁ ଗନ୍ଧ ସର୍ବତ୍ର ଖେଳିଗଲା, ପରାଗ-ଫଗୁ ବୁଣି ହୋଇଗଲା ଏବଂ ମୋତିମାଣିକ୍ୟର ସାଜସଜ୍ଜାରେ ନୃତ୍ୟଛନ୍ଦ ପ୍ରକାଶ ପାଇଲା । ଅପୂର୍ବ ସୁନ୍ଦର ପରିବେଶ । ଚମତ୍କାର ଲଗ୍ନ । ଏହା ଯେ ପ୍ରକୃତରେ ମଧୁ ଲଗ୍ନ ।

ମହୁମହଲରେ ମଧ୍ୟ ଅପୂର୍ବ ପରିବର୍ତ୍ତନ । ମହୁ ବଢ଼ା ଦିନ । ବରଷକରେ ଗୋଟିଏ ଦିନ । ପୁରାତନ ମହୁକ-ଗୋଷ୍ଠୀ ଆଜି ନୂତନ ଗୋଷ୍ଠୀ ଉଦ୍ଦେଶ୍ୟରେ ତାଙ୍କର ସମସ୍ତ କୀର୍ତ୍ତି ଛାଡ଼ିଦେଇ ଚାଲିଯିବ । ସୁଖ-ସୌଭାଗ୍ୟ ଛାଡ଼ି ଅନିର୍ଦ୍ଦିଷ୍ଟ ଅନିଶ୍ଚିତ ବିପଦ ଆଡ଼େ ପୋଖତ ମହୁକମାନେ ଅଭିଯାନ କରିବେ । ପୁରୁଣା ମହୁମହଲ ଅନାଗତା ରାଜକୁମାରୀର ବିବାହ-ଭେଟି ଭାବେ ରହିଯିବ । ତେଣୁ ଆଜିର ଏହି ଝିଲିମିଲି ଦିନଟି ଏକ ସନ୍ଧି-କାଳ ।

ପୁରାତନ ଗୋଷ୍ଠୀର ସବୁ ପୋଖତ ମହୁକ ଏହି ସନ୍ଧିକାଳ କଥା ଜାଣନ୍ତି । ତାଙ୍କ ମଧ୍ୟରେ ପ୍ରଚାରପତ୍ର ବଣ୍ଟାଯାଇ ନାହିଁ । ତାଙ୍କ ଘର କାନ୍ଥରେ, ଛାତରେ ବା ରାସ୍ତାରେ କେଉଁଠି ହେଲେ କୌଣସି ଇସ୍ତାହାର ନାହିଁ । ତଥାପି ସମସ୍ତେ ଜାଣିଛନ୍ତି ଏବଂ ଏକ ମୁହୂର୍ତ୍ତର ଅପେକ୍ଷାରେ ଜାଗି ରହିଛନ୍ତି । ପ୍ରସ୍ତୁତି ଚାଲିଛି । ମହୁମହଲର ସବୁ ପୁରୁଖା ମହୁକ ଜାଗତିଆର । ଯେତେ ଯେଉଁଠି ମହଣ-କାରିଗର ଥିଲେ, ସମସ୍ତେ ତତ୍ପର । ମହୁ-ଭଣ୍ଡାର ଆଜି ମୁକ୍ତ । ସମସ୍ତେ ପେଟ ପୂରେଇ ମହୁ ପିଉଛନ୍ତି । କୌଣସି ବାଧା ନାହିଁ କି ବାରଣ ନାହିଁ । ଭୟ ନାହିଁ କି ଭ୍ରାନ୍ତି ନାହିଁ ।

ରାଣୀମା'ର କର୍ତ୍ତୃତ୍ୱ ଅକାମୀ ହୋଇଯାଇଛି । ତେଣୁ ସେ ଆଜି ବିଚଳିତ ଚକିତ । ସେ ଆଉ ଅଣ୍ଡା ପାରୁନାହିଁ । ସେ ମଧ୍ୟ ଅନ୍ୟାନ୍ୟ ମହୁକମାନଙ୍କ ପରି

ଆନମନା ହୋଇଯାଇଛି । ସେ ବି ଉଦର ଭରି ରାଜଭୋଗ ଅମୃତ ପିଇଛି ।

ସମସ୍ତଙ୍କ ପେଟ ପୂରିଛି । ଏହା ଏକାନ୍ତ କାମ୍ୟ । କାରଣ ପୁରୁଣା ଗୋଠ ଭାଙ୍ଗି ମହୁଙ୍କମାନେ ନୂଆ ଗୋଠ ଗଢ଼ିବେ । ନୂଆ ମହୁମହଲ ଗଢ଼ା ହେବ । ନିର୍ମାଣ କାମ ପାଇଁ ଶକ୍ତି ପ୍ରୟୋଜନ । ଶରୀର ମଧ୍ୟରେ ଖାଦ୍ୟ ପରିପାକ ହେଲେ କାମ କରିବା ପାଇଁ ଶକ୍ତି ମିଳେ । ତେଣୁ ଶକ୍ତି ପାଇଁ ଖାଦ୍ୟ ସଞ୍ଚିତ ହୋଇଥିବା ଆବଶ୍ୟକ । ଅଧିକରେ ପୁଣି ନୂଆ ଗୋଠ ଗଢ଼ିଲାବେଳେ ଅନିଶ୍ଚିତ ଅବସ୍ଥାରେ ଚଳିବାକୁ ହେବ । ପରିବେଶ ଯେ କ'ଣ ହେବ, ତା'ର ଠିକଣା ନାହିଁ । ନୂଆ ଥାନରେ ନଅର ତୋଳୁ ତୋଳୁ ପାଗ ବିଗିଡ଼ିଗଲେ ସରିଲା । . ତେଣୁ ଆଗରୁ ସାବଧାନ ହୋଇ ମହୁଙ୍କମାନେ ପେଟେ ପେଟେ ସାର ବଛା ମହୁ ପିଇଛନ୍ତି ।

ଆଜି ମଉଚ୍ଛବ ଦିନ । ମହୁଙ୍କମାନେ ଆଜି କର୍ମବନ୍ଧନ-ମୁକ୍ତ । ସେମାନଙ୍କର କୌଣସି ଧନ୍ଦା ନାହିଁ । ଏହି ଉତ୍ସବ ଦିନ ବରଷକୁ ମାତ୍ର ଥରେ ଆସେ । ବରଷ ସାରା ମହୁଙ୍କମାନେ କାମରେ ଅନବରତ ଲାଗିଥାନ୍ତି । କେତେ ପୁଣି କାମ ! ଟିକିଏ ବି ବିଶ୍ରାମ ନ ଥାଏ । ଅହରହ କାମ; ମାତ୍ର ନିଜ ପାଇଁ ନୁହେଁ, ଗୋଠ ପାଇଁ । ମହୁଙ୍କ ପେଟ ଟିକିଏ । କେଇଟି ଫୁଲର ମହୁ ସେହି ଛୋଟ ପେଟଟି ପୂରେଇବା ପାଇଁ ଯଥେଷ୍ଟ । ମାତ୍ର ମହୁଙ୍କ ହଜାର ହଜାର ଫୁଲରୁ ମହୁ ସଂଗ୍ରହ କରି ଆଣି ସଞ୍ଚୟ କରେ ଭଣ୍ଡାରରେ । କାମ ଚାପରେ ବିଚାରୀ ମହୁଙ୍କ ଭାଙ୍ଗିପଡ଼େ । କେଇ ସପ୍ତାହରେ ତା'ର ଜୀବନକାଳ ଶେଷ ହୁଏ । ତେଣୁ ବାର୍ଷିକ ବସନ୍ତ ଉତ୍ସବରେ ଯୋଗ ଦେବା ସୁଯୋଗ ସବୁ ମହୁଙ୍କଙ୍କ ଭାଗ୍ୟରେ ଜୁଟେ ନାହିଁ ।

ମଉଚ୍ଛବ ଦିନ ମହୁ ପିଇ ସମସ୍ତେ ଆନନ୍ଦରେ ବିଭୋର । ମହୁଙ୍କ ପକ୍ଷରେ କମ୍ପନ ଜାଗିଛି, ପଦରେ ନୃତ୍ୟଛନ୍ଦ ଲାଗିଛି ଏବଂ କଣ୍ଠରେ ସଂଗୀତର ଝଙ୍କାର ବାଜିଛି । ସେ ଉନ୍ମତ୍ତ ଅଧୀର । ଅକଳନ ଆନନ୍ଦ ଧାରାକୁ ମହୁମହଲର ଅନ୍ଧକାରମୟ ଗହ୍ୱର ମଧ୍ୟରେ ଆବଦ୍ଧ କରି ରଖି ହେଉନାହିଁ । ବ୍ୟଗ୍ର ଆଗ୍ରହରେ ତାହା ବାର ବାର ବାହାରକୁ ବାହାରି ଆସୁଛି । ଶହ ଶହ ମହୁଙ୍କ ମହୁମହଲରୁ ବାହାରି ଆସି ଆନମନା ଭାବେ ଆକାଶରେ ଉଡୁଛନ୍ତି । ପୁଣି ଟିକିଏ ସମୟ ପରେ ମହଲ ଭିତରେ ପଶି ନାଚରେ ଯୋଗ ଦେଉଛନ୍ତି । ଏକ ବିହ୍ୱଳ ଉଚ୍ଛନ୍ନ ଭାବ ସମସ୍ତଙ୍କୁ ଆଚ୍ଛନ୍ନ କରିଛି ।

ମହୁଙ୍କ ମନରେ ଅସ୍ଥିର ଆନନ୍ଦର ଜୁଆର । ଏହି ବସନ୍ତର ରସ ଉତ୍ସବରେ ଯେ କେହି ଲୋକ ମଧ୍ୟ ଭାଗୀଦାର ହୋଇପାରିବ । ମହୁମହଲରୁ ବାହାରି ଉଡ଼ି ବୁଲୁଥିବା ଏବଂ ଗୀତ ଗାଉଥିବା ଅସଂଖ୍ୟ ମହୁଙ୍କ ଭିତରେ ଜଣେ ଲୋକ ଠିଆହୋଇ ଅବାଧରେ ସେମାନଙ୍କୁ ଲକ୍ଷ୍ୟ କରିପାରିବ । ଆଞ୍ଜୁଳା ଆଞ୍ଜୁଳା କରି ସେମାନଙ୍କୁ

ଅକ୍ଳେଶରେ ଧରିପାରିବ । ସେମାନେ ଉତ୍ସବଦିନରେ ଯୁଦ୍ଧ କ୍ରୋଧ ଭୁଲି ଯାଇଛନ୍ତି । ସେମାନେ ଆଜି ତାଙ୍କ ବିଷାକ୍ତ ନାହୁଡ଼ କାହା ଦେହରେ ବିନ୍ଧିବେ ନାହିଁ । ଆଜି ତାଙ୍କ ମନରେ ସନ୍ଦେହ ନାହିଁ କି ଶତ୍ରୁତା ନାହିଁ ।

ଲଗ୍ନ ବେଳ ଆସିଗଲା । ବାହାରେ ଚକମକି କଅଁଳ ଖରା ଛପି ଛପି ଆସି ମହୁମହଲ ତଳେ ପହଞ୍ଚିଗଲାଣି । ମହୁମହଲ ଭିତରେ ମଧ୍ୟ ଗୋଠବନ୍ଧା ପ୍ରସ୍ତୁତି ଶେଷ ହୋଇଯାଇଛି । ଯେଉଁ କାରୁକାର୍ଯ୍ୟ-ଖଚିତ ସୁନ୍ଦର ମନ୍ଦିରମାନଙ୍କରେ ରାଜଜେମାମାନେ ବଢ଼ୁଥିଲେ, ସେମାନେ ପ୍ରାୟ ପୋଖତ ହୋଇ ଆସିଲେଣି । ଆଉ ଅଳ୍ପ କାଳ ବାକୀ । ସେମାନଙ୍କ ଭିତରେ ଗୋଟିଏ ବି ମନ୍ଦିର ଦ୍ୱାର ଖୋଲି ବାହାରିବା ଆଗରୁ ଗୋଠ ଭାଙ୍ଗିବାକୁ ହେବ ।

ହେଇ ଗୋଠ ଭାଙ୍ଗିଲା । ରାଣୀମା'ର କୁଞ୍ଚିତ ପକ୍ଷ ଖୋଲିଗଲା । ସେ ଏକ ବର୍ଷ ଅବଧି ତା'ର ସେହି ପକ୍ଷ କେବେ ବ୍ୟବହାର କରି ନାହିଁ । ଯାତ ଦେଖିବାକୁ ପେଡ଼ି-ସାଇତା ପାଟ ପିନ୍ଧିଲା ପରି ରାଣିମା' ଆଜି ତା'ର ପୁରୁଣା ପକ୍ଷକୁ ସଜାଡ଼ି ଦେଲା । ମହୁମହଲର ରାଜରାସ୍ତାରେ ସେ ଚାଲୁଛି । ଥାଟ ପଟୁଆର ଲାଗିଛି । ମହଣ-କାରିଗରମାନେ ଆଗେ ଆଗେ ଚାଲିଛନ୍ତି । ମହଲ ଭିତରେ ଯେତେ ମହଣ, କାରିଗର ଥିଲେ, ସମସ୍ତେ ଆଗେଇ ଆସିଛନ୍ତି । ଗୋଟିଏ ମଧ୍ୟ ରହିଯାଇ ନାହିଁ । ନୂଆ ନଅର ତୋଳିଲାବେଳେ ସେଇମାନେ ହିଁ ହେବେ ମୂଳ ବିନ୍ଧାଣି ।

ମହୁମହଲର ପ୍ରଧାନ ଦ୍ୱାର ଉନ୍ମୁକ୍ତ । ସେହି ଦ୍ୱାର ଦେଇ ଶହ ଶହ ହଜାର ହଜାର ମହୁକ ବାହାରି ଆସିଲେ । ପ୍ରାୟ ସତୁରି ହଜାର ପୋଖତ ମହୁକ ଏବଂ ସେମାନଙ୍କ ମଝିରେ ରାଣୀମା' ମେଳେଇ ଭେଳେଇ ଉଡ଼ିଲେ । କ୍ରମେ କ୍ରମେ ଦୂରକୁ ଦୂରକୁ ଉଡ଼ିଗଲେ । ଏହି ଉଡ଼ିବା ଆକାଶରେ ମାଣିକ୍ୟ ନେତ ଉଡ଼ିଲା ପରି । ଅପୂର୍ବ ମନୋହର !

ମହୁମହଲରୁ ବାହାରି ମହୁକମାନେ ଦଶ ଦିଗକୁ ଉଡ଼ନ୍ତି । ପୁଣି ସେମାନେ ପୁରୁଣା ମହଲ ନିକଟରେ ଆକାଶରେ ଠୁଳ ହୁଅନ୍ତି, ଖଣ୍ଡିଏ ଚିତ୍ରିତ ମେଘ ଭଳି କିମ୍ବା ଏକ ନବାତୀ ନେତ ପରି । ସ୍ପନ୍ଦନଶୀଳ, ସଙ୍ଗୀତ ମୁଖର ସେହି ନେତ ପବନରେ ଲୋଟାକୋଟା ହୋଇ ଉପର ତଳ ହୋଇ ଉଡ଼େ । କ୍ରମେ ତାହା ଉପରକୁ ଉଡ଼ି ଶାଳବଣର ଉପର ଆକାଶକୁ ଉଠିଯାଏ । ଉପରେ ଉପରେ ପୁଣି ଦୂରକୁ ଦୂରକୁ ସେହି ନେତ ଲମ୍ବିଯାଏ ।

ମହୁକ ସାଧାରଣତଃ ଆକାଶଚାରୀ । ଉଡ଼ିବା ପାଇଁ ଆଜି ତା ପ୍ରାଣରେ ଅସୀମ ଆଗ୍ରହ । ତାହା ଥମିବାର ନୁହେଁ । ମାତ୍ର ରାଣୀମା'ର ଉଡ଼ିବା ଅଭ୍ୟାସ

ନାହିଁ । ସେ ଥକିଯାଏ । ତା'ର ପଥଶ୍ରମ ସାରିବା ପାଇଁ ଆଶ୍ରୟ ଲୋଡ଼ା । ତେଣୁ ସେ ତଳକୁ ଖସେ । ତା ସହିତ ଅନ୍ୟମାନେ ମଧ ତଳକୁ ଖସନ୍ତି । ହେଇ ସେଇଠି ଗୋଟିଏ ମହୁଲ ଗଛ । ଡାଳେ ଡାଳେ ପେଣ୍ଟି ପେଣ୍ଟି ପହୁଲ ଫୁଲ । ଗଛର ସବୁ ପତ୍ର ଖସି ପଡ଼ିଛି । ଫୁଲ ପେଣ୍ଟାଗୁଡ଼ିକ ସୁନ୍ଦର ହୋଇଛି । ସତେଯେପରି ଗଛଟିର ସବୁ ଡାଳ ଅଗରେ ଝୁମ୍ପିଆ ଅଳଙ୍କାର ଖଞ୍ଜା ଯାଇଛି । ପୀତିକର ଆମୋଦ ବେଢ଼ି ରହିଛି । ଶୁକ କପୋତ ଆଦି ପକ୍ଷୀମାନେ ଗଛଡାଳରେ ବସି ଫୁଲ ରସ ପିଉଛନ୍ତି ଏବଂ ଗୀତ ଗାଉଛନ୍ତି । ସେହି ସୁଶୋଭିତ ମହୁଲଗଛ ଡାଳରେ ରାଣୀମା' ବିଶ୍ରାମ ନେଲା । ଦଳ ଦଳ ହୋଇ ସବୁ ମହୁକମାନେ ସେଇଠି ବସିଗଲେ ।

ଏବେ ସମସ୍ତେ ନିଃଶବ୍ଦ ନିସ୍ତବ୍ଧ । ଗୋଟିଏ ଡାଳରୁ ପ୍ରାୟ ସତୁରି ବା ପଞ୍ଚସ୍ତରି ହଜାର ମହୁକ ନିଶ୍ଚଳ ହୋଇ ତା ଉପରେ ତା ଉପରେ ବସି ଝୁଲି ରହିଛନ୍ତି । ତାଙ୍କରି ଭିତରେ ମଝିରେ କେଉଁଠି ସେମାନଙ୍କ ରାଣୀମା' ନିରାପଦରେ ଅଛି । ସେମାନଙ୍କ ଭିତରୁ କେତେକ ଡଗର ଚାରିଦିଗକୁ ନଅର ତୋଳିବା ସ୍ଥାନ ଖୋଜି ଯାଇଛନ୍ତି ।

ଡଗରମାନେ ଗୋଟି ଗୋଟି ହୋଇ ଚଉଦିଗରୁ ଫେରିଲେ । ସେମାନେ ଯେଉଁଠି ଯାହା ଠାବ କରିଛନ୍ତି, ଗୋଠ ଆଗରେ ତାହା ବଖାଣିଲେ । କେଉଁ ଚାର ବାର୍ତ୍ତା ଦେଲା ଯେ, ସେ ଗୋଟିଏ ମଲାଗଛରେ ଫାଟ ଦେଖିଛି । ଆଉ କିଏ କହିଲା ଯେ, ସେ ଗୋଟିଏ ଗୁମ୍ଫା ଦେଖି ଆସିଛି । ଆଉ କିଏ କହିଲା ଦୁଇଟି ପଥର ସନ୍ଧିରେ ଥିବା ଗାତ କଥା । ଏହିପରି କେତେ କେତେ ଚାର-ବାର୍ତ୍ତା ଶୁଣାଗଲା । ବିଚାର ହେଲା । ସ୍ଥାନଗୁଡ଼ିକ ଗୋଠ ମନକୁ ପାଉନାହିଁ । କେଉଁଟା ଖରାଦିନରେ ଅତି ତାତିଯିବ, କେଉଁଟା ବର୍ଷାରେ ବୁଡ଼ିଯିବ, କେଉଁଟା ବା ଛୋଟ, ଆଉ କେହି ବା ଭୂଇଁ ନିକଟରେ । ଖରାଦିନ ବଣପୋଡ଼ିବେଳେ ନିଆଁ ଧାସ ସେଠି ଲାଗିବ । ଏହିପରି କେତେ ଅଡୁଆ ଅସୁବିଧା ।

ଗୋଠ କେଭେଁ ଏହିପରି କଥା କହି କିଛି ବିଚାର କରେ ନାହିଁ । ହେଲେ ଗୋଠ ବିଚାର କରେ, ବାଛେ ନାଚ ମାଧ୍ୟମରେ । ଏହା ତାଙ୍କର ପ୍ରକୃତି ବା ପ୍ରବୃତ୍ତି । ଜନ୍ମଗତ ଅଧିକାର । ସେମାନେ କିପରି ନଅର ତୋଳା ସ୍ଥାନ ସମ୍ବନ୍ଧରେ ଭାବ-ବିନିମୟ କରନ୍ତି, ତାହା ଅଜ୍ଞାତ । ମାତ୍ର ସେମାନେ ଯେ ଏହା କରିବାକୁ ଏକାନ୍ତ ସମର୍ଥ, ଏଥିରେ ସନ୍ଦେହ ନାହିଁ ।

ଗୋଠ ମନକୁ ନ ପାଇବା ଯାଏଁ ଜାଗା ଖୋଜା ଚାଲିଛି । ନୂଆ ନୂଆ

ଚାର ନୂଆ ନୂଆ ଥାନ ବିବରଣୀ ଆଣୁଛନ୍ତି । ଶେଷରେ ଗୋଟିଏ ସ୍ଥାନ ସମସ୍ତଙ୍କ ମନକୁ ମାନିଲା । କିଛି ଦୂରରେ ଗୋଟିଏ କେନ୍ଦୁଗଛ । ତଳୁ କିଛି ଉଚ୍ଚରେ ଏକ ଛକି । ଛକି କୋଡ଼ରେ ଗୋଟିଏ କୋରଡ଼ । ସେଇଠି ନୂଆ ମହଲ ତୋଳିବା ଠିକଣା ହେଲା ।

ପୁଣି ସଙ୍ଗୀତ, ପୁଣି ଅସ୍ଥିର ଆବେଗ । ସମସ୍ତେ ପୁଣି ଉଡ଼ିଲେ । ଏଥର କିନ୍ତୁ ଆଉ ଆନମନା ଭାବ ନାହିଁ । ଯଥାସମ୍ଭବ ସଳଖେ ସଳଖେ ଗଛପତ୍ର କଟେଇ ସେମାନେ ଉଡ଼ିଗଲେ । ଏହି ଉଡ଼ିବାରେ ମନ୍ଥରତା ନାହିଁ । ଏହା ତୀବ୍ର ପ୍ରଖର ।

କୋରଡ଼ ଭିତରେ ଗୃହପ୍ରବେଶ ହେଲା । କାମ ଆରମ୍ଭ ହେଲା । କେତେ ମହୁକ କୋରଡ଼ ଭିତର ସଫା କରିବାରେ ଲାଗିଲେ । ଉତ୍ସବ ଶେଷ ହେଲା । ଉତ୍ସବ ବନ୍ଧା ପାଳନ କରିବା ପାଇଁ ସଭିଏଁ ଶାନ୍ତ ଓ ତୃପ୍ତ ।

## ନୂଆ ନଅର ସ୍ଥାପନା

ଲାବଣ୍ୟମୟ ପୁର ଛାଡ଼ି, ଭବିଷ୍ୟତର ଅନିଶ୍ଚିତ ସମ୍ଭାବନା ଉପରେ ନିର୍ଭର କରି, ମହୁକମାନେ ଉଡ଼ି ଉଡ଼ି ଆସି, ଏକ ବୃକ୍ଷ-କୋଟରରେ ପଶିଲେ । ସେଇଠି ତାଙ୍କର ନୂଆ ନଅର ବା ଗଡ଼ ସେମାନେ ଗଢ଼ିବେ । ଟିକି ଟିକି ପତଙ୍ଗ ଦେହରେ ବଡ଼ ହୃଦୟ ଏବଂ ସାହସ । ଯାହା ସେମାନେ ଛାଡ଼ି ଆସିଛନ୍ତି, ସେଥିପାଇଁ ତିଳେ ହେଲେ ତାଙ୍କର ଶୋଚନା ନାହିଁ । 'ହେବ କି ନ ହେବ' ଭାବି ଭାବି ସେମାନେ ବିବ୍ରତ ନୁହନ୍ତି । ବିରାଟ ସେହି ତ୍ୟାଗ ।

ଯେଉଁ ମହୁମହଲ ମହୁକମାନେ ଛାଡ଼ି ଆସିଲେ, ତହିଁରେ ପ୍ରାୟ ପଚାଶ କିଲୋ ବିଶୁଦ୍ଧ ମହୁ ସଞ୍ଚିତ ହୋଇଥିଲା । ମହୁ ସାଧାରଣ ଖାଦ୍ୟଦ୍ରବ୍ୟ ନୁହେଁ । ସେଥିରେ ଚଷୁ ନାହିଁ, ଚୋପା ନାହିଁ, ତନ୍ତୁ ନାହିଁ କି ଟାକୁଆ ନାହିଁ । ସେଥିରୁ ଟିକିଏ ହେଲେ ବାଦ ଯାଏ ନାହିଁ । ତେଣୁ ମହୁ ପ୍ରକୃତରେ ତରଳ ଜୀବନ ଭଳି; ଅମୃତ । ଗୋଟିଏ ମହୁକର ଓଜନ ଯେତେ, ତା'ର ପାଞ୍ଚ-ଛଅ ଲକ୍ଷ ଗୁଣ ଓଜନର ଅମୃତ ଭଣ୍ଡାରରେ ଥିଲା । ସେ ସବୁ ଅନାଗତ ବଂଶଧରମାନଙ୍କ ପାଇଁ ସେମାନେ ଛାଡ଼ି ଆସିଲେ । ବାହ୍ୟ ଚାପଯୋଗୁଁ ନୁହେଁ, ସ୍ୱଇଚ୍ଛାରେ ।

ନୂଆ ସ୍ଥାନରେ ସବୁ ଶୂନ୍ୟ । ବିନ୍ଦୁ ମାତ୍ର ମହୁ ନାହିଁ, ରଞ୍ଚେ ହେଲେ ମହଣ ନାହିଁ । ସାଜ ସରଞ୍ଜାମ କିଛି ନାହିଁ । ସବୁ ନୂଆ କରି ଗଢ଼ିବାକୁ ହେବ । ଗଛ କୋରଡ଼ର ଅନ୍ଧାର ଭିତରେ ଏକ ଅଭିନବ ସର୍ଜନା ସ୍ଥାପନା କରିବାକୁ ହେବ । ତଥାପି ମହୁକ ମନରେ ଅବସାଦ ନାହିଁ କିମ୍ବା କାମରେ ଶିଥିଳତା ନାହିଁ । ଅପରନ୍ତୁ

ସେମାନେ ତୀବ୍ର ବେଗରେ ଏବଂ ତୁରନ୍ତ ତାଙ୍କ ନୂଆ ନିର୍ମାଣ କାମ ଆରମ୍ଭ କରନ୍ତି ।

ମହୁକମାନଙ୍କ କଣ୍ଠରେ ଶୁଭ ସଙ୍ଗୀତ । ପାଦରେ ନୃତ୍ୟର ଛନ୍ଦ । ମହୁକମାନେ ନୂଆ ସ୍ଥାନରେ ସମବେତ ହେଲେ । ଗୋଲେଇ କରି ରହି ସମସ୍ତେ ଶେଷ ଉତ୍ସବ ପାଳନ କଲେ । ତାହା ପରେ କାମ ଆରମ୍ଭ । ଦଳ ଦଳ ହୋଇ ବିଭିନ୍ନ କାମ କରିବାରେ ଲାଗିଲେ ।

ବିନ୍ଧାଣୀ ମହୁକମାନେ ଧାଡ଼ି ବାନ୍ଧି କୋରଡ଼ କାନ୍ଥ ଚଢ଼ିଲେ । କୋରଡ଼ ତାଳୁକାରେ ପହଞ୍ଚି ପ୍ରଥମ ମହୁକଟି ଆଗଗୋଡ଼ର ପାଦ ସାହାଯ୍ୟରେ ଝାବୁଡ଼ି ଧରି ଝୁଲିପଡ଼ିଲା । ତା ପଛରେ ଥିବା ମହୁକଟି ଝୁଲିଲା ପ୍ରଥମ ମହୁକ ଦେହକୁ ଧରି । ଏହିପରି ପଛରେ ଥିବା ମହୁକ ତା ଆଗରେ ଥିବା ମହୁକକୁ ଧରି ଝୁଲିଲା । ଫଳରେ ଗୋଟିଏ ମାଳ ରଚନା ହୁଏ । ସେହିପରି ଅନେକ ମାଳ ପାଖକୁପାଖ ଲାଗି କୋରଡ଼ ଛାତରୁ ତଳକୁ ଏକ ତିନିକୋଣିଆ ପରଦା ପରି ଝୁଲିରହେ ।

ପରଦା ଦେହରେ ସବୁ ବିନ୍ଧାଣୀ ମହୁକ ଖଞ୍ଜି ହୋଇଯିବା ପରେ କୋରଡ଼ ଭିତରେ ଜୀବନ୍ତ ପରଦାଟିର ହଲଚଲ ସମ୍ପୂର୍ଣ୍ଣ ବନ୍ଦ ହୋଇଯାଏ । କେତେବେଳ ପର୍ଯ୍ୟନ୍ତ ଏହିପରି ଭାବରେ ନିଶ୍ଚଳ ହୋଇ ସେମାନେ ମହଣ ସର୍ଜନା କାମରେ ତନ୍ମୟ ହୋଇ ରହନ୍ତି । ମହଣ ସର୍ଜନା କାମ ଅତ୍ୟନ୍ତ ଦୁରୂହ କାମ । ମହୁମହଲ ମଧ୍ୟରେ ତାହାହିଁ ସବୁଠାରୁ କଠିନ କାମ । ମହଣ ତିଆରି କରିବା ପାଇଁ ଯେଉଁ ଯନ୍ତ୍ର ଆବଶ୍ୟକ, ତାହା ପ୍ରତ୍ୟେକ ମହୁକ ଦେହରେ ଖଞ୍ଜା ହୋଇଥାଏ । ମାତ୍ର ସମସ୍ତେ ମହଣ ଗଠନ କରିପାରନ୍ତି ନାହିଁ । ନୂଆ ଯୁବା ଜନମାନେ କେବଳ ତାହା ସାଧନ କରି ପାରନ୍ତି । ସେହିମାନେ ନିଶ୍ଚଳ ପରଦାରେ ଖଞ୍ଜିହୋଇ ଝୁଲିରହି ମହଣ ଗଠନ କାମରେ ଲଗ୍ନ ହୁଅନ୍ତି । ସେମାନଙ୍କୁ ସେଥିପାଇଁ ବାର ଘଣ୍ଟାରୁ ଚବିଶ ଘଣ୍ଟା ପର୍ଯ୍ୟନ୍ତ ସେହି କାମରେ ଲାଗି ରହିବାକୁ ପଡ଼େ ।

କୋରଡ଼ ମଧ୍ୟରେ ଆଉ ଯେତେ ଯେତେ ମହଣ-ଗଠନ-ଅପାରଗ ମହୁକ ଥା'ନ୍ତି, ସେମାନଙ୍କର ମହଣ-ଗଠନକାରୀଙ୍କ ପରଦା ପ୍ରତି ସମ୍ମାନ ଏବଂ ସମ୍ଭ୍ରମ ଥାଏ । ସେମାନେ ଅନ୍ୟାନ୍ୟ ଇତର କାମ କରିବାରେ ଲାଗନ୍ତି; ମାତ୍ର ସାବଧାନରେ ସେମାନେ କାମ କରୁଥାନ୍ତି । ଗହଳ ଚହଳ କରନ୍ତି ନାହିଁ । ଠେଲାପେଲା କରନ୍ତି ନାହିଁ । ତାଙ୍କ ଭତରୁ କେତେକ କୋରଡ଼ର କାନ୍ଥ ଛାତ ଏବଂ ତଳ ପରୀକ୍ଷା କରି କେଉଁଠି ମଳି ଧୂଳି ଲାଗିଛି, ତାହା ପାଟିରେ କାମୁଡ଼ି ବାହାରେ ବୋହି ଆଣି ପକେଇ ଦିଅନ୍ତି । କେତେକ ନିକଟବର୍ତ୍ତୀ କେଉଁ ଗଛରୁ ଝୁଣା, ଲାଖ ବା ଅଠା ଆଣି କୋରଡ଼ ଭିତରଯାକ ଲେପି ଚିକ୍କଣ ପାଲିଶ୍ କରନ୍ତି ।

ବିନ୍ଧାଣିମାନଙ୍କ ଝୁଲାମାଳ ପରଦାରେ ବିନ୍ଧାଣିମାନେ କ୍ରମେ କ୍ରମେ ଅଧିକରୁ ଅଧିକ ଚାପି ହୋଇ ରହନ୍ତି । ସେମାନଙ୍କ ଶରୀରର ଉଷ୍ମତା ବଢ଼ିଯାଏ । ମନେହୁଏ କୋରଡ଼ ଭିତରେ ସତେଯେପରି ଧିପି ଧିପି ନିଆଁ ଜଳୁଛି । କି କଠୋର ସାଧନା ଏବଂ କି ଆଶ୍ଚର୍ଯ୍ୟ ସୃଷ୍ଟି ! ନିଜକୁ ଢାଳି ସେମାନେ ଭବିଷ୍ୟତ ପାଇଁ ଗଢ଼ ଗଢ଼ନ୍ତି । ପ୍ରକୃତରେ ଏହି ମହଣ ଗଠନ ଜ୍ୱାଳାରେ କେତେ ମରି ଯାଆନ୍ତି ।

ପ୍ରାୟ ଅଷ୍ଟପ୍ରହରୀ ସାଧନା ପରେ ସିଦ୍ଧି ମିଳେ । ପେଟ ତଳେ ଥିବା ମହଣ ନିର୍ମାଣକାରୀ ଯନ୍ତ୍ରଗୁଡ଼ିକର ଦ୍ୱାର ଖୋଲିଯାଏ । ପରଦାର କବାଟଗୁଡ଼ିକ ଉଠପଡ଼ ହୋଇ ଏକ ସୂକ୍ଷ୍ମ ତରଙ୍ଗ ଲୟ ରଚନା କରନ୍ତି । ଶେଷରେ ଯନ୍ତ୍ରଗୁଡ଼ିକରେ ଟିକି ଟିକି ଶୁଭ୍ର ମଣି ଦେଖାଦିଏ । ସେହି ମହଣମଣିଗୁଡ଼ିକ ଏତେ କ୍ଷୁଦ୍ର ଏବଂ ଏତେ ପତଳା ଯେ, ସେଥିରୁ ଶହେ ଖଣ୍ଡ ବି ଗୋଟିଏ ଚାଉଳର ଓଜନରୁ କମ୍ ।

ଏହି ଅତୁଳ କୃତିତ୍ୱର ସମ୍ବାଦ କୋରଡ଼ ଭିତରେ ନୂତନ ଜାଗରଣ ଆଣେ । ମହଣ-ମଣ୍ଡିତ ମହୁକଟି ଝୁଲା ପରଦାରୁ ବାହାରି ଆସେ । ବିଜୟ-ଉଲ୍ଲାସରେ ବିହ୍ୱଳ ହୋଇ ସେ ପରଦା ଉପରେ ଚଢ଼ି ଚଢ଼ି ଗମ୍ବୁଜ ଗର୍ଭରେ ପହଞ୍ଚେ । ସେଠାରେ ସେ ଅନ୍ୟମାନଙ୍କଠାରୁ ଅଲଗା ହୋଇଯାଏ ଏବଂ ପୁଣି ଝୁଲି ରହେ । ଏବେ ସେ ତା'ର ଗୋଡ଼ ସାହାଯ୍ୟରେ ମହଣ-ମୁଣାରୁ ଖଣ୍ଡିଏ ପତଳା ମହଣ-ପାତ ବାହାର କରି ନିଏ । ନିପୁଣ କାରିଗର ପରି ସେ ସେହି ମହଣ ଟିକକ ନିଜ ମୁହଁର ଲାଳ ସହିତ ମିଶେଇ ଦଳି ଗୁଡ଼େଇ ଗୋଲ କରେ ଏବଂ ଜିଭରେ ଚାଟି ପୁଣି ଚେପଟା କରେ । ମହଣ ପାଗିଗଲେ ସେ ମହଣ ଟିକକ ଗମ୍ବୁଜ ଗର୍ଭରେ ଲଖେଇ ଦିଏ । ନୂତନ ମହୁମହଲର ଏହା ପ୍ରଥମ ଭିତ୍ତି ପ୍ରସ୍ତର ବା ଶୁଭକରଣ । ସେହି ଆଦ୍ୟ ମହଣ ଲେପ ସହିତ ମହୁକଟି ଆଉ କେତେ ଖଣ୍ଡ ମହଣ-ପାତ ମଧ ତା ପେଟତଳ ମୁଣାରୁ ବାହାର କରି ପୂର୍ବ ଭଳି ଦଳି ଲଗାଏ । ତା' କାମ ଶେଷ ହୋଇଯାଏ । ଶେଷରେ ଟିକିଏ ଚାଟିଦିଏ, ଶୃଙ୍ଗିକା ସାହାଯ୍ୟରେ ଟିକିଏ ବାରିନିଏ ଏବଂ ଚଞ୍ଚଳ ପଦକ୍ଷେପରେ ସେହି ସ୍ଥାନ ଛାଡ଼ି ତଳେ ଅନ୍ୟାନ୍ୟ ମହୁକମାନଙ୍କ ଭିଡ଼ରେ ମିଶିଯାଏ ।

ଝୁଲା ପରଦାରୁ ଆଉ ଏକ ମହୁକ ବାହାରି ଆସେ । ସେ ପୁଣି ପ୍ରଥମ ବିନ୍ଧାଣି ମହୁକ ସ୍ଥାନ ଅଧିକାର କରେ । ଯେଉଁଠୁ କାମ ବନ୍ଦ ଥିଲା, ସେହିଠୁଁ ସେ କାମ ଆରମ୍ଭ କରେ । ନିଜ ଦେହରେ ତିଆରି ହୋଇଥିବା ମହଣକୁ ବାଗେଇ ସେ ପ୍ରଥମ ମହଣ ପିଣ୍ଡ ସହିତ ଯୋଗ କରିଦିଏ । ତା'ପରେ ତୃତୀୟ, ଚତୁର୍ଥ, ପଞ୍ଚମ... । ପରଦାର ବିଭିନ୍ନ ପ୍ରାନ୍ତରୁ ସେମାନେ ବାହାରି ଆସନ୍ତି । ନିଜ ନିଜ

ମହଣ ପାତଗୁଡ଼ିକ ଆପେ ଆପେ ବାଗେଇ ଭିଭି ଦେହରେ ମିଶେଇ ଗଢ଼ି ଯାଆନ୍ତି । କ୍ରମେ ମହଣ-ବାହକ ମହୁକ ସଂଖ୍ୟା ଅଗଣିତ ହୁଏ । ସମସ୍ତେ ଏକଲୟରେ ଅଛ ଅଛ କରି ମହଣ ପିଣ୍ଡ ବଢ଼େଇ ଚାଲନ୍ତି । ସମସ୍ତଙ୍କ ମିଳିତ ଚେଷ୍ଟାରେ କାମ ଆଗେଇଯାଏ ।

ଗମ୍ବୁଜ ଗର୍ଭରୁ ମୁଣ୍ଡାଏ ଆକୃତି-ହୀନ ମହଣପିଣ୍ଡ ଝୁଲି ରହେ । ସେହି ମହଣ ପିଣ୍ଡଟି ଉଷ୍ମ ଓ ନରମ ଥାଏ । ଏହାର ପରିମାଣ ଯଥେଷ୍ଟ ହେବାକ୍ଷଣି ମହୁକ ମେଳ ଭିତରୁ ଅନ୍ୟ ଏକ ମହୁକ ବାହାରି ପଡ଼େ । ସେ ଏକ ନିପୁଣ ଖୋଦନକାରୀ କାରିଗର । ମହୁକ ଜନତାର ସାଗ୍ରହ ଦୃଷ୍ଟି ଆଗରେ ସେ ମହଣପିଣ୍ଡରୁ ଖୋଳି କଡ଼ମୁହାଁ ଗୋଟିଏ କୋଷ ପ୍ରସ୍ତୁତ କରେ । କୋଷ ଭିତରୁ ଯେଉଁ ମହଣ ବାହାରେ, ତା'ରି ସାହାଯ୍ୟରେ ସେ କୋଷର ଉପର କାନ୍ଥ ଏବଂ କାନ୍ଥ ଧାର ଗଠନ କରେ । ତାହା ମହୁମହଲର ପ୍ରଥମ କୋଷ ।

ସେହି ପ୍ରଥମ କୋଷଟି ଗଠିତ ହେଉ ହେଉ ଅନ୍ୟ ଏକ କାରିଗର ଅନ୍ୟ ପାଖରେ ତଦ୍ରୂପ ଅନ୍ୟ ଏକ କୋଷ ନିର୍ମାଣ ଆରମ୍ଭ କରିଦିଏ । ଏହି ଦୁଇଟି ମହୁକ ତାଙ୍କ କାମ ଶେଷ କରି ସ୍ଥାନ ଛାଡ଼ିବା ମାତ୍ରକେ ଅପେକ୍ଷା କରି ରହିଥିବା ଅନ୍ୟ ଦୁଇଟି ମହୁକ ପାଳି କରନ୍ତି । ସେମାନେ ପୁଣି ପ୍ରଥମ କୋଷ କାନ୍ଥକୁ ଲଗେଇ ସମାନ ଆକାରର ଅଧିକା ଦୁଇଟି କୋଷ ଗଠନ କରନ୍ତି । ତା ପରେ ପରେ ଚାରି ଆଠ ଷୋଳ... ସଂଖ୍ୟାରେ କାରିଗର ଜୁଟିଯାଆନ୍ତି । କୋଷ ପରେ କୋଷ ଗଠିତ ହୁଏ । ସିଧା ସିଧା ତଳକୁ ଝୁଲୁଥିବା ଗୋଟିଏ ସାଧାରଣ କାନ୍ଥର ଦୁଇପଟେ କଡ଼ମୁହାଁ କୋଷଗୁଡ଼ିକ ଧାଡ଼ି ଧାଡ଼ି ହୋଇ ତିଆରି ହୋଇଯାଏ । ଏହିପରି ପ୍ରଥମ ମହୁଫେଣା ତିଆରି ହୁଏ । ଦଳେ ନିଜ ଦେହରୁ ମହଣ ମାରି ଆଣି ଯୋଗେଇ ଦିଅନ୍ତି ଏବଂ ଅନ୍ୟ ଦଳେ ମହୁକ ସେହି ମହଣକୁ ଲଗେଇ ଫେଣା ବଢ଼ାନ୍ତି ।

ପ୍ରଥମ ଫେଣା ହେଉଁ ହେଉଁ ତା'ରି ପାଖରେ ସମାନ୍ତରାଳଭାବେ ଅନ୍ୟ ଏକ ଫେଣା ପୁଣି ତିଆର ହୁଏ । ଦୁଇ ଫେଣାରେ ଫାଙ୍କ ଫାଳକର କୋଷଗୁଡ଼ିକ ମୁହାଁମୁହିଁ ଥାଏ । ମାତ୍ର ଏପରି ମାପରେ ଗଠିତ ହୋଇଥାଏ ଯେ, ଗୋଟିଏ ଫେଣା ଉପରେ ଦଳେ ମହୁକ ଯାତାୟାତ କରୁଥିଲାବେଳେ ସମ୍ମୁଖ ଫେଣା ଫାଙ୍କରେ ଅନ୍ୟ ମହୁକମାନେ କାମ କଲେ କୌଣସି ବାଧା ଲାଗେ ନାହିଁ । ଏହିପରି ଭାବରେ ନିର୍ଦ୍ଦିଷ୍ଟ ମାପ ଏବଂ ଶୃଙ୍ଖଳାରେ କୋଷ, ଫେଣା ଏବଂ ମହଲ ବଢ଼ି ବଢ଼ି ଯାଏ ।

ଫେଣାରେ ସର୍ବମୋଟ ଚାରି ପ୍ରକାର କୋଷ ଥାଏ । ଢେମାଦେଇମାନଙ୍କ

ପାଇଁ କିପରି ବଡ଼ ବଡ଼ ରାଣୀହଂସପୁର ବା ଚାରୁ ଚିତ୍ରଶାଳା ନିର୍ମିତ ହୁଏ, ତାହା ଉଲ୍ଲେଖ କରାଯାଇଛି । ଆବଶ୍ୟକ ହେଲେ ତାହା ନିର୍ମିତ ହୁଏ । ଦ୍ୱିତୀୟରେ ନାଗର ମହଲ । ପୁରୁଷମାନଙ୍କ ପାଇଁ ଏହି କୋଷଗୁଡ଼ିକ ସାମାନ୍ୟ ବଡ଼ ବଡ଼ ହୋଇ ନିର୍ମିତ ହୁଏ । ପୁରୁଷ ମାଛିମାନେ ବଢ଼ି ବାହାରିଗଲେ, ସେଥିରେ ମଧୁ ସଞ୍ଚିତ ହୋଇ ରହେ । ସାଧାରଣତଃ ଯେତେବେଳେ ଅଧିକ ଫୁଲ ଫୁଟେ ଏବଂ ବହୁତ ମହୁ ମିଳେ, ସେହି ଋତୁରେ ଏହି କୋଷଗୁଡ଼ିକ ନିର୍ମିତ ହୁଏ । ତୃତୀୟରେ ସାଧାରଣ ମହୁକ କୋଷ । ସେହି କୋଷଗୁଡ଼ିକର ସଂଖ୍ୟା ଅଧିକ । ଗୋଟିଏ ଫେଣାରେ ପାଞ୍ଚ ଭାଗରୁ ପ୍ରାୟ ଚାରି ଭାଗ ଏହିପ୍ରକାର କୋଷ । ଏହି କୋଷରେ ମହୁକମାନେ ଜନ୍ମ ଲାଭ କରନ୍ତି । ସେମାନେ ବଢ଼ି କୋଷରୁ ବାହାରିଗଲେ ସେଥିରେ ମହୁ ଏବଂ ପରାଗପିଠା ସଞ୍ଚିତ ହୋଇ ରହେ । ଶେଷରେ ପୁଣି ସନ୍ଧି କୋଷ ।

ପ୍ରଥମ ତିନି ପ୍ରକାର କୋଷଗୁଡ଼ିକର ମାପ ସମାନ ରହେ । ମାତ୍ର ଗୋଟିଏ ପ୍ରକାର କୋଷ ସହିତ ଅନ୍ୟପ୍ରକାର କୋଷ ଖଞ୍ଜିଲାବେଳେ କିଛି ସ୍ଥାନ ବଳକା ପଡ଼ିବା ସ୍ୱାଭାବିକ । ସେହି ସ୍ଥାନରେ ସନ୍ଧିକୋଷ ଗଠିତ ହୁଏ । ସନ୍ଧିକୋଷଗୁଡ଼ିକର ଆକାର ଅନିୟମିତ । ଯେଉଁଠି ଯେତିକି ସ୍ଥାନ ବଳିଲା, ସେଇଠି ଏକ ବା ଏକାଧିକ ବିଷମାକୃତି ସନ୍ଧିକୋଷ ଖଞ୍ଜାଯାଏ । ବାକ୍ୟ ମଧ୍ୟରେ ଅବ୍ୟୟ ପଦ ପରି ଫେଣା ମଧ୍ୟରେ ସନ୍ଧିକୋଷ ଯୋଗାଯୋଗ ସ୍ଥାପନ କରେ । ଆବଶ୍ୟକତା ଅନୁସାରେ ସନ୍ଧିକୋଷ ଏବଂ ପାର୍ଶ୍ୱବର୍ତ୍ତୀ କୋଷକୁ ଭାଙ୍ଗି ପରେ ନୂଆ ପ୍ରକାର କୋଷ ମଧ୍ୟ ରଚିତ ହୋଇଥାଏ । ସାନରୁ ବଡ଼ ବା ବଡ଼ରୁ ସାନ କୋଷ ହୋଇପାରେ ।

ଫେଣାର ଏପାଖରୁ ସେପାଖକୁ ଯିବାପାଇଁ ସଂଯୋଗକାରୀ ପଥ ମଧ୍ୟ ଥାଏ । ଅବିଳମ୍ବେ ଦୁଇ ପାର୍ଶ୍ୱ ମଧ୍ୟରେ ସଂଯୋଗ ସ୍ଥାପନ କରିବା ନିମିତ୍ତ ଏବଂ ବାୟୁ-ସଞ୍ଚାଳନର ସୁବିଧା ନିମିତ୍ତ ଏହି ଆକାଶୀ ଦ୍ୱାରଗୁଡ଼ିକ ରଖାଯାଇଥାଏ । ତେଣୁ ଗୋଟିଏ ମହୁକ ତୁରନ୍ତ ଏକ ରାଜପଥରୁ ଅନ୍ୟ ରାଜପଥକୁ ଯାଇପାରେ ।

ମହଣକାରୀମାନେ ତେଣେଁ ମହଣ କରୁଛନ୍ତି । ଏଣେଁ କୋଷ-ନିର୍ମାତାମାନେ ଫେଣା ଗଢୁଛନ୍ତି । ଗୃହ ଗଢ଼ାହେଲା । ଏବେ ଗୃହପ୍ରବେଶ ପର୍ବ ପାଳନ କରାଯିବ । ସେଥିପାଇଁ ମଧ୍ୟ ଆୟୋଜନ ଚାଲିଛି । ଏପର୍ଯ୍ୟନ୍ତ ରାଣୀମା' ଇତସ୍ତତଃ ହୋଇ ବ୍ୟଗ୍ର-ବ୍ୟସ୍ତଭାବେ ଚାରଣ କରୁଥିଲା । ଘର ନିର୍ମାଣ ହେବାକ୍ଷଣି ସେ ତାହା ଅଧିକାର କରିନେଇଛି । ସେବିକାଦଳ, ଦେହରକ୍ଷୀଦଳ ଏବଂ ପାର୍ଶ୍ୱଚରେମାନଙ୍କ ଗହଣରେ ସେ ରହିଛି । ଘର ଘର ବୁଲି ପ୍ରତ୍ୟେକ ଘରେ ସେ ଗୋଟିଏ ଗୋଟିଏ ଅଣ୍ଡା ପାରୁଛି ।

ଗୋଲାକାର ଏକ ପଦକର କେନ୍ଦ୍ରମଣି ପରି ରାଣୀମା'ର କଣ୍ଡାକାର ଦେହଟି

ଉଙ୍କିକି ଦିଶେ । ସେହି କେନ୍ଦ୍ରକୁ ଘେରି ବିଭିନ୍ନ ବେଢ଼ାରେ ସେବିକା ଏବଂ ଅନ୍ୟାନ୍ୟ ମହୁକମାନେ । ସମସ୍ତଙ୍କ ମୁହଁ ରାଣୀମା' ଆଡ଼କୁ । ଗୋଟିଏ ହେଲେ ଆଡ଼ବାଙ୍କ ନାହିଁ । କୌଣସି ମହୁକ ରାଣୀମା' ପାଖକୁ ଆସିଲାବେଳେ କିମ୍ବା ରାଣୀମା'ଠାରୁ ଦୂରେଇ ଗଲାବେଳେ ବରାବର ରାଣୀମା' ଆଡ଼କୁ ମୁହଁ କରି ଆସେ ବା ପଛେଇ ପଛେଇ ଯାଏ । ରାଣୀମା' ଯେଉଁଆଡ଼େ ଗଲେ ମଧ୍ୟ ସାଧାରଣ ଜନତା ସର୍ବଦା ତା'ରି ଆଡ଼କୁ ମୁହଁ କରି ରହି ଅଭିବାଦନ ଜଣାଏ । ଏଇ ପ୍ରକାର ସମ୍ମାନ ଦେଖାଇବାରେ କେବେ ବ୍ୟତିକ୍ରମ ଦେଖାଯାଏ ନାହିଁ ।



ରାଣୀମା ସମଭିବ୍ୟାହାରରେ ଆଗେଇଯାଏ । ଗୋଟିଏ ନୂଆ କୋଷ ଭିତରକୁ ଲକ୍ଷ୍ୟ କରେ । ସବୁ ଠିକ୍ ଅଛି । ସାମାନ୍ୟ ଆଗେଇ ଯାଏ । ଦେହଟି ଧନୁପରି ବଙ୍କେଇ ତାର ପଛ ଭାଗଟି କୋଷ ମଧ୍ୟରେ ପ୍ରବେଶ କରାଏ ଏବଂ ଅଣ୍ଡାଟିଏ ପାରିଦିଏ ।

ରାଣୀମାକୁ ଘେରି ଯେଉଁ ପାରିଷଦବର୍ଗ ଥାଆନ୍ତି, ସେମାନେ ଉଦ୍‌ବିଗ୍ନ ଚିତ୍ତରେ ଅନେଇ ରହିଥାନ୍ତି । କେହି କେହି ରାଣୀମାଙ୍କ ପକ୍ଷକୁ ଆଉଁଶି ଦେଉଥାଏ । ଆଉ କେହି କେହି ସନ୍ତ୍ରସ୍ତ ପ୍ରାଣରେ ମୁହୂର୍ମୁହୁ ଶୁଙ୍ଗିକା କମ୍ପନ କରୁଥାଏ । ରାଣୀମା' ଅଣ୍ଡାଦେବା ପରେ ପରେ ପୁଣି ସେମାନେ କୋଷ ମଧ୍ୟରେ ଥରେ ଥରେ ଦେଖି ନିଅନ୍ତି । ସନ୍ଦେହ ତୁଟେ ।

ଏଇ ପ୍ରଥମ ଅଣ୍ଡା ଦେବାଠୁଁ ରାଣୀମା'ର ଅଣ୍ଡାଦେବା କାମ ଆଉ ବନ୍ଦ ହୁଏନାହିଁ । ଶୀତ ଋତୁରେ ତାହା କିଛି ପରିମାଣରେ ଊଣା ହୋଇଯାଏ । ମାତ୍ର ମୃତ୍ୟୁପର୍ଯ୍ୟନ୍ତ ରାଣୀମା' ଅଣ୍ଡା ପାରୁଥାଏ । ଦିବସ ରଜନୀ ସର୍ବଦା ତାର ସେହି କାମ ଲାଗିଥାଏ । ଖାଇବାପାଇଁ ମଧ୍ୟ ସ୍ୱତନ୍ତ୍ର ଅବସର ନାହିଁ । ଖାଉଁ ଖାଉଁ ସେ ଅଣ୍ଡା ଦିଏ ।

ବେଳେ ବେଳେ ମହୁକମାନେ ତରବରରେ ରାଣୀମା' ପାଇଁ ଉଦ୍ଦିଷ୍ଟ ମହଲରେ ମହୁ ଭରି ଦିଅନ୍ତି । କାରଣ ମହୁ ମିଳୁଛି ପ୍ରଚୁର । ଛାଡ଼େ କିଏ ? ଯାହା ମିଳୁଛି ତାହା ଆଣି ମହୁକ ସାଇତି ଦିଏ । ରାଣୀମା' ନିଜ କାମ କରୁଁ କରୁଁ ସେହି କୋଷଗୁଡ଼ିକ ପାଖରେ ପହଞ୍ଚିଯାଏ । ସଙ୍ଗେ ସଙ୍ଗେ ମହୁକମାନେ ମିଳି ସେହି ସେହି କୋଷଗୁଡ଼ିକରୁ ମହୁ ଅନ୍ୟତ୍ର ବୋହି ନିଅନ୍ତି । କୋଷଗୁଡ଼ିକୁ ଚାଟି ସଫା କରି ଦିଅନ୍ତି । ରାଣିମା' ସେଥିରେ ଅଣ୍ଡା ଦିଏ ।

ଆଉ କେତେବେଳେ ଏପରି ହୁଏ ଯେ, ମହୁ ଯଥେଷ୍ଟ ମିଳୁଛି, ସାଇତିବା ପାଇଁ ସ୍ଥାନାଭାବ । କୋଷ-ନିର୍ମାତାମାନେ ଜାଣି ଜାଣି ଧାଡ଼ି ଧାଡ଼ି କରି ବଡ଼ ବଡ଼ କୋଷ ଗଢ଼ି ଦିଅନ୍ତି । ସେହି ବଡ଼ କୋଷଗୁଡ଼ିକ ନାଗର ପୁରୁଷଙ୍କ କୋଷ । ରାଣୀମା' ଦେଖେ । ସେଥିରେ ସେ ଅଣ୍ଡିର ଅଣ୍ଡା ପାରେ । କେତେଗୁଡ଼ିଏ ଅଣ୍ଡା ଦେବାପରେ ସେ ବିରକ୍ତ ହୁଏ । ଆଉ ଅଣ୍ଡା ନ ଦେଇ ଚାଲିଯାଏ । ସେ ବୁଲି ବୁଲି ଦେଖେ । ଆଦ୍ୟରେ ଯେଉଁ କୋଷଗୁଡ଼ିକରେ ଅଣ୍ଡା ଦିଆ ଯାଇଥିଲା, ସେଥିରୁ ପତଙ୍ଗ ବାହାରି ଉଡ଼ିଗଲେଣି । ସେଥିରେ ପୁଣି ରାଣୀମା' ଅଣ୍ଡା ଦେଇ ଦେଇ ଯାଏ । ଏଣେ ବଡ଼ ବଡ଼ ଅଣ୍ଡିରା କୋଷଗୁଡ଼ିକରେ ମହୁକମାନେ ମହୁ ଭରି ଦିଅନ୍ତି କିମ୍ବା ଆବଶ୍ୟକତା ଅନୁସାରେ କୋଷ-ନିର୍ମାତାମାନେ ତାହାକୁ ଭାଙ୍ଗି ସନ୍ଧିକୋଷ ଯୋଡ଼ି ସାଧାରଣ ମହୁକ କୋଷ ଗଠନ କରନ୍ତି ।

ସବୁ ମହୁକ ରାଣୀମା' ଆଜ୍ଞା ପାଳନ କରନ୍ତି । ତଥାପି ସେମାନେ ଏପରି କାମ କରନ୍ତି ଯେ ରାଣୀମା'ର କାମ ନିର୍ଦ୍ଧାରିତ ହୋଇଯାଏ । ଦୃଷ୍ଟାନ୍ତ ସ୍ୱରୂପ ରାଣୀମା' ଯେତିକି ଖାଏ, ସେହି ଅନୁପାତରେ ଅଣ୍ଡା ଦେଇପାରେ । ଏହି ଅନୁପାତ ବିଧିବଦ୍ଧ ଓ ନିର୍ଦ୍ଦିଷ୍ଟ । ରାଣୀମା' ନିଜେ ନିଜେ ଖାଏ ନାହିଁ । ମା' ଛୁଆକୁ ଖୁଆଇଲା ପରି ସେବିକାମାନେ ରାଣୀମା'କୁ ଖୁଆଇ ଦିଅନ୍ତି । । ଫୁଲ ଯଦି ଅଧିକ ଫୁଟୁଛି, ମହୁ ବି ଅଧିକ ମିଳୁଛି । ତେଣୁ ରାଣୀମା' ଖାଉଛି ପ୍ରଚୁର ଏବଂ ଅଣ୍ଡା ଦେବା ସଂଖ୍ୟା ମଧ୍ୟ ଅଧିକ । ସେହିପରି ଖାଦ୍ୟ ପରିମାଣ କମିଗଲେ ଅଣ୍ଡା ସଂଖ୍ୟା ବି ଛାଏଁ ଛାଏଁ ଊଣା ହେବ । ଜୀବନରେ ଅନେକ କାମ ପରି ଏଠାରେ ମଧ୍ୟ ଏକ ସ୍ୱୟଂକ୍ରିୟ ପଦ୍ଧତି ପ୍ରକାଶପାଏ । କାରଣ ଏବଂ ପରିଣାମ ଛନ୍ଦାଛନ୍ଦି ହୋଇ

ରହିଛି । ପ୍ରକୃତି ଅଲକ୍ଷ୍ୟରେ ତାହା ନିୟନ୍ତ୍ରଣ କରୁଛି । ଜୀବନ-ସ୍ରୋତ ନିୟନ୍ତ୍ରିତ ହୋଇ ଆଗକୁ ଆଗକୁ ବହି ଯାଉଛି ।

## ସ୍ୱୟଂବରା ଢେମା

ମୁକ୍ତା–ମାଳୀ ଝରଣା କୂଳର ପୁରୁଣା ମହୁମହଲକୁ ଫେରିଯିବା । ସେହି ପୁରୁଣା ମହୁ ମହଲରୁ ଗୋଟିଏ ଗୋଠ ଉଡ଼ିଗଲା । ଅଧାରୁ ଅଧିକ ପୋଖତ ମହୁକ ଚାଲିଗଲେ । ସେଠି ଏବେ ସବୁ ଖାପଛଡ଼ା ହୋଇ ଯାଇଛି । ସବୁଆଡ଼ ଖାଲି ଖାଲି ଲାଗୁଛି । ମାତ୍ର ତା ଭିତରେ ଏବେ ମଧ ହଜାର ହଜାର ମହୁକ ଅଛନ୍ତି । ତାଙ୍କ କାମ ଠିକ୍ ଠିକ୍ କରିବାରେ ଲାଗିଛନ୍ତି । ସେମାନେ ଗଲାକଥା ଭାଳି ଅଥୟ ନୁହନ୍ତି କିମ୍ବା କେଉଁ କାମ କିପରି କରିବାକୁ ହେବ, ତାହା ଭୁଲି ନାହାନ୍ତି । ଅଧିକ ଶ୍ରମକରି ସେମାନେ ପୁରୁଣା ଘରକୁ ସଜାଡ଼ିବାରେ ଲାଗିଛନ୍ତି । ଯେଉଁ ଅନେକ ଚାଲିଗଲେ, ସେମାନଙ୍କ ସବୁକାମ, ଯେଉଁ କେତେକ ରହିଲେ ସେମାନେ ପାରୁପର୍ଯ୍ୟନ୍ତ ଲାଗି କରୁଛନ୍ତି ।

ରହିଯାଇଥିବା ମହୁକମାନେ ମହୁମହଲ ସଫା କରିଦେଲେ । ଭଣ୍ଡାର ଘରକୁ ସଜାଡ଼ି ଦେଲେ । ମହୁ ମହଲର ଆବଶ୍ୟକତା ଅନୁସାରେ ଯାହା ଯାହା ଦରକାର, ସେମାନେ କରୁଛନ୍ତି । କେତେକ ମଧ ବଣକୁ ଯାଇ ମହୁ ଓ ପରାଗ ସଂଗ୍ରହ କଲେଣି । ଖାଲି ପଡ଼ିଥିବା ମହୁଭାଣ୍ଡଗୁଡ଼ିକ ଯେ ପୁଣି ପୂର୍ଣ୍ଣ କରିବାକୁ ହେବ । ଭବିଷ୍ୟତ ପାଇଁ ଖାଦ୍ୟଭଣ୍ଡାର ଭରପୂର କରି ରଖିବାକୁ ହେବ ।

ପୁରୁଣା ମହୁମହଲ ମଧରେ ବିଷାଦର ଛାଇ ନାହିଁ; ବରଂ ଆଶା, ଆବେଗ ଏବଂ ଆନନ୍ଦର ଲକ୍ଷଣ ବିରାଜୁଛି । ବୁଢ଼ୀମା' କାହାଣୀରେ ଆମେ ଶୁଣୁ କୁହୁକପୁର କଥା । ତା ଭିତରେ ହଜାର ହଜାର ସୁନାଫରୁଆ କାନ୍ଥଦେହରେ ଖଞ୍ଜାହୋଇ ରହିଛି । ପ୍ରତ୍ୟେକ ଫରୁଆରେ ଅନାଗତ ଶିଶୁମାନଙ୍କ ଆତ୍ମା ସଞ୍ଚିତ ହୋଇ ରହିଛି । କଅଁଳା ପିଲା ଜନ୍ମଲାଭ କଲାବେଳେ ସେହି ଆତ୍ମା ତା' ଦେହରେ ବିକାଶ ଲାଭକରୁଛି । ପୁରୁଣା ମହୁ-ମହଲ ସେହିପରି ଏକ କୁହୁକ ଦୁର୍ଗ । ଏଥି ଭିତରେ ଜନ୍ମ ହୋଇନଥିବା ହଜାର ହଜାର ଶିଶୁ କୋଷମଧରେ ବଢୁଛନ୍ତି । ଆଉଟା ସୁନା ଭଳି ମହଣରେ ତିଆରି ନିବୁଜ କୋଷରେ ମହୁକ-ଶିଶୁ ବା 'ଶୂକ' ବଢୁଛି । ଦେହରଙ୍ଗ ତା'ର ଦୁଧକୁ ବଳି ଧଳା । ଗୋଡ଼, ଶୁଙ୍ଗିକା ଏବଂ ପକ୍ଷ ଭାଙ୍ଗିହୋଇ କୁଞ୍ଚିତ ହୋଇଛି । ମୁଣ୍ଡ ଆଗକୁ ଢଳି ରହିଛି । ଅଘୋର ନିଦରେ ସେ ଶୋଇଛି । ଜାତକ-ଲଗ୍ନ ପାଖେଇ ପାଖେଇ ଆସୁଛି । ଏହିପରି ହଜାର ହଜାର ଶିଶୁ ମହଣ ଫରୁଆରେ ଶୋଇ ରହିଛନ୍ତି ।

ଶିଶୁମାନେ ଶୋଇଥିବା ଫରୁଆଗୁଡ଼ିକୁ ବେଢ଼ି ଶତ ଶତ ମହୁକ ଡେଣା ହଲେଇ ନାଚ କରୁଛନ୍ତି । ସେମାନେ ଫେଣାର ଉଷ୍ଣତା ସମାନ ରଖିବାରେ ଲାଗିଛନ୍ତି । ସବୁଆଡ଼େ ବାୟୁ-ସଞ୍ଚାଳନ ସୁଗମ କରୁଛନ୍ତି । ପୁଣି ଶିଶୁ ଜନ୍ମ ହେବାକ୍ଷଣି ତାର ଯତ୍ନ ନେବାପାଇଁ ଆଗ୍ରହରେ ଅପେକ୍ଷା କରି ରହିଛନ୍ତି ।

ଏଣେ ଜେମାଦେଈପୁରକୁ ଘେରି ରହିଛନ୍ତି ସତର୍କ ପ୍ରହରୀମାନେ। ଦଣ୍ଡେହେଲେ ସେମାନେ ଆଉ କୁଆଡ଼େ ଯାଉନାହାନ୍ତି ।.ଯାହା କହନ୍ତି ଖାଡ଼ା ପହରା । ସେମାନେ ଯେ ଭବିଷ୍ୟତ ରାଣୀଙ୍କ ପ୍ରାସାଦ ଜଗିଛନ୍ତି। ସେଥିରେ ହେଳା କଲେ ଚଳେନା ।

ବଡ଼ ବଡ଼ ମନ୍ଦିର କେତୋଟି ଭିତରେ ଜେମାମାନେ ବଢ଼ୁଛନ୍ତି । ଜେମାମାନଙ୍କ ବୟସ ସମାନ ନୁହେଁ । ଗୋଠ-ନିୟମ ଅନୁସାରେ ବିଭିନ୍ନ ବେଳ ବ୍ୟବଧାନରେ ଜେମାମାନଙ୍କ ଅଣ୍ଡା ଦିଆଯାଇଛି । ତେଣୁ ବିଭିନ୍ନ ଅବସ୍ଥାରେ ସେମାନେ ବଢ଼ୁଛନ୍ତି । ମାତ୍ର ସମସ୍ତଙ୍କୁ କାଳନିଦ୍ରା ଘାରିଛି । ରାଜ ପଲଙ୍କରେ ସମସ୍ତେ ଅଘୋର ନିଦରେ ନିମଗ୍ନ । ଗୋଟିକର ଜାତକ ଲଗ୍ନ ପାଖେଇ ଆସିଲାଣି । ଗୋଠ ଭାଙ୍ଗିବା ଦିନ ଯାଇ ସଞ୍ଜ ହେଲା । ସେଇ ସଞ୍ଜବେଳ । ଗୋଟିଏ ମନ୍ଦିର ମଧ୍ୟରେ ଜେମାଟିର ଅଭିବୃଦ୍ଧି ପୂର୍ଣ୍ଣ ହୋଇଗଲା । ତାର ଗାଢ଼ ନିଦ ଭାଙ୍ଗିଲା । ତା' ଗଳାରୁ ଜୀବନ-ସଙ୍ଗୀତର ଏକ ସ୍ୱର ବାହାରି ମହୁମହଲ ଭିତରେ ଲହରେଇଗଲା । ବାହାରେ ସମସ୍ତେ ସେହି ସ୍ୱରରେ ବିମୋହିତ ହୋଇ ସ୍ତବ୍ଧ ଚକିତ ହୋଇଗଲେ ।

ମନ୍ଦିର ମଧ୍ୟରେ ରାଣୀମା' ଅଣ୍ଡାଟିଏ ଦେଇଥିଲା । ସାଧାରଣ ମହୁକ-କୋଷରେ ସେ ଯେଉଁ ମାଈ ଅଣ୍ଡା ଦିଏ, ଏଥିରେ ମଧ୍ୟ ସେହିଭଳି ଅଣ୍ଡାଟିଏ ସେ ପାରିଥିଲା । କୌଣସି ପାର୍ଥକ୍ୟ ନାହିଁ । ତିନି ଦିନରେ ଅଣ୍ଡା ଫୁଟେଇ 'ଶୂକ' ବାହାରିଲା । ସେବିକାମାନେ ଯତ୍ନରେ ଆଦରରେ ସେହି ଶୂକଟିକୁ ରାଜଯୋଗ୍ୟ ଅମୃତମଣୋହି ଖୁଆଇଲେ । ସାଧାରଣ ମହୁକ ଯେଉଁ ମହୁ ବା ପରାଗ ପିଠା ଖାଇ ବଢ଼ନ୍ତି, ସେପରି ଇତର ଖାଦ୍ୟ ମନ୍ଦିରର ଦେବୀ ପାଖକୁ କେବେହେଲେ ଯାଏ ନାହିଁ । ତାର ଖାଦ୍ୟ କେବଳ ଅମୃତମଣୋହି । ସେହି ଅମୃତମଣୋହି ବା ରାଜ-ଜେଲୀ ଖାଇ ଖାଇ ଜେମା-ଶୂକ ବଢ଼ିଲା । ତଦ୍ୱାରା ଅଭିବୃଦ୍ଧିବେଳେ ଜେମା-ଶୂକ ଅଙ୍ଗ ଅନ୍ୟ ରୀତିରେ ଗଠିତ ହେଲା । ଯୌନାଙ୍ଗ ସମ୍ପୂର୍ଣ୍ଣ ବିକଶିତ ହେଲା । ସେ ମା' ହେବାର କ୍ଷମତା ଲାଭ କଲା ।

ସାଢ଼େ ପାଞ୍ଚଦିନ ରଜ-ଜେଲୀ ଖୁଆଇବା ପରେ ସେବିକାମାନେ ଜେମା-ଶୂକଟିକୁ ଖୁଆଇବା ବନ୍ଦ କରିଦେଲେ ଏବଂ ମନ୍ଦିର-ଦ୍ୱାର ନିବୁଜ କରିଦେଲେ । ସାଢ଼େସାତ ଦିନରେ ଶୂକ ଜେମାରେ ରୂପାନ୍ତରିତ ହୋଇଗଲା ।

ଢେମାର ଅଙ୍ଗଗଠନ ସାଧାରଣ ମହୁଙ୍କର ଅଙ୍ଗଗଠନଠାରୁ ବହୁଭାବରେ ସ୍ୱତନ୍ତ୍ର । ଢେମାର ଶରୀର ମହୁଙ୍କଶରୀରର ଦୁଇଗୁଣ ଲମ୍ବ । ତା'ର ରଙ୍ଗ ଉଜ୍ଜ୍ୱଳ ଏବଂ ଅଧିକ ସ୍ୱର୍ଣ୍ଣାଭ । ତାର ଅଙ୍କୁଶ ବକ୍ର । ସାଧାରଣ ମହୁଙ୍କ ଆଖିରେ ବାର ବା ତେର ହଜାର ଚକ୍ଷୁକ ଥିଲାବେଳେ ଢେମାଆଖିରେ ମାତ୍ର ସାତ ଆଠ ହଜାର ଚକ୍ଷୁକ ଅଛି । ତାର ମୁଣ୍ଡଟି ଛୋଟ ଏବଂ ତା ଗୋଡ଼ରେ ପରାଗ ବୋହିବା ପାଇଁ ପେଡ଼ି ନାହିଁ କିମ୍ବା ପରାଗ ସଂଗ୍ରହ କରିବା ବ୍ରୁସ ନାହିଁ । ମହଣ ତିଆରିକରିବା ଖୋପ ମଧ୍ୟ ତା ପେଟତଳେ ନାହିଁ ।

ଢେମାର ଯୌବନ-ପ୍ରାପ୍ତି ଘଟିଛି । ତା କଣ୍ଠରେ ବିଜୟ-ସଙ୍ଗୀତ । ଏକ ତୀକ୍ଷ୍ଣ ଧାର ସୂର ପରି ବା ପତ୍ର-କାହାଳୀର ସରଳ ସମ ସୂର ଭାବରେ ସେହି ଅଭିଯାନର ଆବାହନୀ । ଜନତାର କୋଳାହଳ ଭେଦକରି ତାହା ସମସ୍ତ ମହୁ-ମହୁଲ ମଧ୍ୟରେ ସଂଚରିଗଲା । ଆଉସବୁ ସ୍ୱର ଶବ୍ଦ ତୁରନ୍ତ ବନ୍ଦ ହୋଇଗଲା । ସବୁ ମହୁଙ୍କ ସାବଧାନ ହୋଇଗଲେ ଏବଂ ଅପେକ୍ଷାରେ ରହିଲେ ।

ଏକ ଠିକ୍ 'ଠ'-ବର୍ତ୍ତୁଳ ରେଖାରେ ଢେମା ନିଜ ମନ୍ଦିରର ମୁଣ୍ଡିଟି କାଟି ଦ୍ୱାର ଖୋଲିଦେଲା । ମନ୍ଦିରଭିତରୁ ଉଜ୍ଜ୍ୱଳ ଦେବୀମୂର୍ତ୍ତି ପରି ଅପୂର୍ବ ଶୋଭା ଧାରଣ କରି ପୂର୍ଣ୍ଣଯୌବନା ଢେମା ବାହାରି ଆସିଲା । ଅନୁପମ ରୂପରାଶିରେ ଗଢ଼ା ମହୁମହଲର ଅଧିଷ୍ଠାତ୍ରୀ ଦେବୀ ରାଜଢେମା । ପିଠିପଟେ ତାର ଝିଲିମିଲି ପକ୍ଷ ଭାଙ୍ଗିହୋଇ ରହିଛି । ଜୋଛନା-ମଖା ସେହି ଅସ୍ପଷ୍ଟ ଆଲୋକରେ ମଧ୍ୟ ରାଜଢେମାର ରୂପ ରଙ୍ଗ ଏବଂ ଢଙ୍ଗ ମହୁଙ୍କମାନଙ୍କ ପୁଞ୍ଜାକ୍ଷରେ ସୁସ୍ପଷ୍ଟ ହୋଇ ପ୍ରତିଫଳିତ ହୋଇଛି । ସମସ୍ତେ ମୁଗ୍ଧ ମୋହିତ ହେଲେ ।

ମୁହୂର୍ତ୍ତକ ପରେ ରାଜଢେମା ଫେଣାମଝିରେ ଅଦୃଶ୍ୟ ହୋଇଗଲା । ପୂର୍ଣ୍ଣପାତ୍ର ଏକ ମହୁ ଭାଣ୍ଡରେ ଅଧର ଲଗେଇ ସେ ଉଦରଭରି ମହୁ ପିଇଦେଲା । ଦେହ ଶକ୍ତ ହେଲା, ମହୁ ପିଇବା ଦୃଢ଼ ହେଲା । ତାର କାମ ପାଇଁ, ତାର ଜୟଯାତ୍ରା ପାଇଁ, ଏହି ଶକ୍ତି ଏକାନ୍ତ ଆବଶ୍ୟକ ।

ଢେମାର ସ୍ୱର ଏବେ ଅଧିକ ତୀକ୍ଷ୍ଣ ଏବଂ କଠୋର । ନିଜର ବଡ଼ିମା ପ୍ରକାଶ କରିବା ସଙ୍ଗେ ସଙ୍ଗେ ସେହି ତୁରୀୟ ସ୍ୱର ଅପର ପ୍ରତି ହେୟ ଭାବ ପ୍ରକାଶ କରୁଛି । ସେହି ଅଖଣ୍ଡ ଧ୍ୱନି-ଡିଣ୍ଡିମ ବଜେଇ ବଜେଇ ଢେମା ଆଗେଇ ଯାଉଛି । ମନ୍ଦିର ଦ୍ୱାର ଖୋଲିବାର ମାତ୍ର ଦଶମିନିଟ୍ ସମୟ ଯାଇଛି । ଢେମା ବ୍ୟଗ୍ର ଉତ୍କଣ୍ଠାରେ ରାଜରାସ୍ତାରେ ବେଗି ବେଗି ଧାଉଁଛି । ତେବେ କେଉଁଠି ହେଲେ କେହି ତାର ଅଭ୍ୟର୍ଥନା କରୁନାହିଁ । ସଭିଏଁ ରାସ୍ତା ଛାଡ଼ିଦେଇ କଡ଼େଇ ରହୁଛନ୍ତି ।

ରାଜ-ସମ୍ମାନ ଢେମା ପାଏନାହିଁ । ତାର ଯେ ଅଭିଷେକ ହୋଇନାହିଁ । ଅଭିଷେକ ଉତ୍ସବ ପାଇଁ ସେ ଯେ ଉପଯୁକ୍ତା, ଏହା ଢେମା ନିଜେ ପ୍ରମାଣ କରିବ । ସେଇଥିପାଇଁ ସେ ବ୍ୟଗ୍ର ବ୍ୟାକୁଳ ।

'ଯୁଦ୍ଧଂ ଦେହି' ଡାକ ଦେଇ ଢେମା ଏବେ ଅନ୍ୟ ଢେମା-ମନ୍ଦିର ନିକଟରେ ପହଞ୍ଚିଗଲା । ଭିତରୁ ଅସ୍ପଷ୍ଟ ଭାବରେ ସେହି ଡାକର ପ୍ରତିଧ୍ୱନି ଶୁଣାଯାଉଛି । ଢେମା ତେଣୁ ଉତ୍ତେଜିତା । ସେ ଅଥୟ ହୋଇ ମନ୍ଦିରର ଚୂଳ କାଟି ଦ୍ୱାର ଖୋଲିଲା ଏବଂ ତତ୍‌କ୍ଷଣାତ୍ ନୃଶଂସ ଭାବରେ ନିଜ ଭଉଣୀର ମୁଣ୍ଡ ମୋଡ଼ି ଛିଣ୍ଡେଇଦେଲା । ପୁଣି ବିଜୟ ଉଲ୍ଲାସରେ ଗୀତ ଗାଇ ଗାଇ ସେ ଆଗେଇ ଗଲା ।

ଖୋଜି ଖୋଜି ଢେମା ପୁଣି ଆଉ ଗୋଟିଏ ମନ୍ଦିର ପାର୍ଶ୍ୱରେ ପହଞ୍ଚିଗଲା । ସେଠି ପୁଣି ସେଇ ପୁରୁଣା ଚୂଇମାର କର୍ମକାଣ୍ଡ । ପୁଣି ସେହି ଭଗିନୀ-ହତ୍ୟା ଦୃଶ୍ୟ । ସମୁଦାୟ ମହୁମହଲ ଭିତରେ ଯେତେ ମନ୍ଦିରରେ ଢେମା ବଢ଼ୁଥିଲେ, ସବୁ ଖୋଜି ପ୍ରଥମ ଢେମା ନିପାତ କରିଦେଲା । ସେ ପ୍ରଥମେ ଜନ୍ମ ହୋଇଛି । ତେଣୁ ରାଜାଧିକାର ତା'ର ପ୍ରାପ୍ୟ । ସେ ତାହା ଅବଶ୍ୟ ଗ୍ରହଣ କରିବ । ମାତ୍ର ସେ କୌଣସି ପ୍ରତିଦ୍ୱନ୍ଦ୍ୱୀ ଚାହେଁନା । ମୂଳୁଁ ମାଇଲେ ଶେଷ । କଳିତକରାଳ କରିବା ପାଇଁ ଅବକାଶ ବି ନ ଥିବ । ତେଣୁ ଗୋଟି ଗୋଟି କରି ରାଜଯୋଗ୍ୟ ପ୍ରତ୍ୟେକ ଢେମାକୁ ସେ ମାରିଦିଏ । ଶୋଇଲା ଭଉଣୀମାନେ ପ୍ରତିଯୋଗିତା କରିବା ସୁବିଧା ପାଇବା ଆଗରୁ ମୃତ୍ୟୁମୁଖରେ ପଡ଼ନ୍ତି । ସମ୍ପୂର୍ଣ୍ଣ ଏକତରଫା ଯୁଦ୍ଧ । ମାତ୍ର ତାହା ଗୋଠର କଠୋର ନିୟମ । ସେଥିରେ ଜଣକର ଜୀଇବା ବଞ୍ଚିବା ପ୍ରଶ୍ନ ନାହିଁ । ଗୋଠର ମଙ୍ଗଳପାଇଁ ଯେତେ ଅଳ୍ପ ଜୀବନ କ୍ଷୟ ଆବଶ୍ୟକ, ସେତିକି କେବଳ ନଷ୍ଟ ହୁଏ । ସେଥିରେ କୂଟନୀତି ନାହିଁ ବା ଶୀତଳ ଯୁଦ୍ଧ ନାହିଁ ।

ଶୋଇ ରହିଥିବା ଢେମାମାନେ ମୁଣ୍ଡମୋଡ଼ାରେ ମରନ୍ତି । ତା'ପରେ ମହୁକମାନେ ସେମାନଙ୍କୁ ଖଣ୍ଡ ଖଣ୍ଡ କରି ମହୁମହଲ ବାହାରେ ଫିଙ୍ଗି ଦିଅନ୍ତି । ସୁଗଠିତ ସୁନ୍ଦର ମନ୍ଦିରର କାନ୍ଥ ଭାଙ୍ଗି ଦିଅନ୍ତି । ଦଣ୍ଡକ ପରେ ସବୁ ଶେଷ । ମନ୍ଦିରର ଚିହ୍ନବର୍ଣ୍ଣ ନଷ୍ଟ ହୋଇଯାଏ । ରାତି ପାହିଲାବେଳକୁ ଅସ୍ପଷ୍ଟ କେତୋଟି ଭିତ୍ତି ଦାଗ ବ୍ୟତୀତ ଆଉ କିଛି ଲକ୍ଷଣ ନ ଥାଏ । ଜେଠା ଢେମା କେବଳ ତା'ର ବଡ଼ିମା ଗାଇ ଗାଇ ବୁଲୁଥାଏ ।

ଆଉ ଗୋଟିଏ ଦିନ ବିତିଗଲା । ପୁଣି ବି ରାତି । ଅବିରାମ ଭାବରେ ବିନିଦ୍ର ହୋଇ ଢେମା ଏ ପୁରରୁ ସେ ପୁର ଘୁରି ବୁଲୁଛି । ସେଇ ଏକ ଲୟ ଏବଂ ବିହ୍ୱଳ ଭାବ । କିନ୍ତୁ ତାକୁ କେହି ଅଭ୍ୟର୍ଥନା କରୁନାହିଁ ବା ଖାଇବାକୁ

ବି ଦେଉନାହିଁ । ସମସ୍ତେ ହେମାକୁ ଆଗ୍ରହରେ ଲକ୍ଷ୍ୟ କରୁଛନ୍ତି । ସମସ୍ତେ ଅପେକ୍ଷା କରୁଛନ୍ତି; ମାତ୍ର ପାଖକୁ ଆସିଲେ ଉପେକ୍ଷା କରୁଛନ୍ତି ।

ଅବଶେଷରେ ହେମାର ପ୍ରସ୍ତୁତି ଶେଷ ହେଲା । ମଧୁଚକ୍ର ଛାଡ଼ି ସେ ସିଂହଦ୍ୱାର ଆଡ଼କୁ ଅଗ୍ରସର ହେଲା । ଦ୍ୱାର ସମ୍ମୁଖରେ ଏକ ଖରଶ୍ୱାସ ଶରୀର ଭିତରକୁ ଟାଣିନେଲା । ସର୍ବାଙ୍ଗ ତା'ର ମୁକ୍ତ ବାୟୁରେ ପୂରି ଫୁଲିଗଲା । ଝିଲିମିଲି ଡେଣା ତା'ର ଖୋଲିଗଲା । ସ୍ଫୁଲିଙ୍ଗ ଭଳି ଅଥବା ଉତ୍‌କ୍ଷିପ୍ତ ତାରକା ଭଳି କିମ୍ବା ପ୍ରତିଫଳିତ ଏକ ଆଲୋକ-ରଶ୍ମି ପରି ହେମା ଉର୍ଦ୍ଧ୍ୱ ଆକାଶକୁ ଉଡ଼ିଗଲା ।

ହେମା ପଛେ ପଛେ ଅଣ୍ଡିରା ନାଗରମାନେ ଉଡ଼ିଲେ । ସେମାନେ ଆଗରୁ ମହୁମହଲ ପ୍ରବେଶଦ୍ୱାର ପାଖେ ମେଳି କରି ଉଡୁଥିଲେ, ପଡୁଥିଲେ, ନାଚୁଥିଲେ, କୁଦୁଥିଲେ । ତାଙ୍କ ଭିତରୁ ଗୋଟିଏ ବି ପୁରୁଣା ରାଣୀମା ସହିତ ଗୋଠ ଭାଙ୍ଗି ଯାଇନାହିଁ । ଏଇଠି ଦ୍ୱାରକୁ କେନ୍ଦ୍ରକରି ସେମାନେ ଭିଡ଼ କରିଥିଲେ । ସେବିକାମାନେ ମଧ୍ୟ ସେମାନଙ୍କୁ ସହାନୁଭୂତିର ସହିତ ବ୍ୟବହାର ଦେଉଥିଲେ । ଖାଇପିଇ ଆହ୍ଲାଦରେ ଉଲ୍ଲାସରେ ଗୀତ ଗାଇ ରହିଥିଲେ—ଏକ ଶୁଭଲଗ୍ନ ଅପେକ୍ଷାରେ । ଏବେ ହେମାଦେଈଙ୍କ ଆବିର୍ଭାବ ସେହି ଶୁଭକ୍ଷଣ ଆଣି ଦେଲା । ଚୁମ୍ବକ ଲୁହାଗୁଣ୍ଡ ଟାଣିଲା ପରି ହେମାଦେଈଙ୍କ ରୂପଲାବଣ୍ୟ ନାଗରମାନଙ୍କୁ ଟାଣି ନେଇଗଲା । ହେମାଙ୍କ ପଛରେ ଉଲ୍ଲାସ ଲାଞ୍ଜ ପରି ନାଗରମାନେ ଉଡ଼ି ଉଡ଼ି ଗଲେ ।



ଏହି ଉଡ଼ିବା ସାଧାରଣ ଉଡ଼ିବା ନୁହେଁ । ପ୍ରକୃତରେ ଏହା ଜୀବନ ମରଣ-ଉଡ଼ିବା । କଠୋର ପ୍ରତିଯୋଗିତାମୂଳକ ଉଡ଼ିବା । ପ୍ରାଣ ପଣ କରି ଆରଣ୍ୟ ଉଦ୍ୟମରେ ସେମାନେ ଉଡୁଛନ୍ତି । ଜିଣିବାରେ ଜୀବନର ସର୍ବଶ୍ରେଷ୍ଠ ପୁରସ୍କାର—ଢେମାର ସଙ୍ଗଲାଭ । ତେଣୁ ଆପ୍ରାଣ ଉଦ୍ୟମରେ ନାଗରମାନେ ଢେମା ପଛେ ପଛେ ଉଡ଼ି ତାକୁ ଧରିବାକୁ ଉଦ୍ୟମ କରୁଛନ୍ତି ।

ଢେମା ଆଜି ସ୍ୱୟମ୍ବରା । ଯେଉଁ ଅଣ୍ଡିର ନାଗର ତାକୁ ସୁଦୂର ଆକାଶରେ ଆଲିଙ୍ଗନ କରିବାକୁ କ୍ଷମ ହେବ, ସେହି ହେବ ଢେମାର ବର । ତାରି ସାଙ୍ଗରେ ହେବ ଢେମାର ବିବାହ । ତେଣୁ ସମସ୍ତେ ଉଡ଼ିବାରେ ବ୍ୟସ୍ତ ।

ଅଧିକରୁ ଅଧିକ ଦ୍ରୁତ ବେଗରେ ଢେମା ଉଡୁଛି ଏବଂ ତା ପଛେ ପଛେ ନାଗରମାନେ ଉଡୁଛନ୍ତି । ପୃଥିବୀପୃଷ୍ଠରୁ ସେମାନେ ଏକ କିଲୋମିଟର ଉପରକୁ ଉଡ଼ିଲେଣି । ତଥାପି ଉଡ଼ିବାରେ ଶିଥିଳତା ନାହିଁ । ହେଇ ପ୍ରାୟ ଦୁଇ କିଲୋମିଟର ଉଚ୍ଚତାରେ ସେମାନେ । ଡେଣା ଥକିଗଲାଣି; ଶରୀର ଦୁର୍ବଳ ହେଲାଣି । ଗୋଟିକ ପରେ ଗୋଟିଏ ନାଗରର ପୌରୁଷ ପରାଜିତ । ହୃତ୍‌ପିଣ୍ଡ ଅଧିକ ଦାବି ସମ୍ଭାଳି ନ ପାରି ବିଦୀର୍ଣ୍ଣ ହୋଇଗଲା । ଗୋଟିକ ପରେ ଗୋଟିଏ ସେହି ଉଚ୍ଚ ଆକାଶରୁ ଉଡୁ ଉଡୁ ମରି ତଳକୁ ଖସି ପଡ଼ିଲେ । ପ୍ରାୟ ଶହେ ନାଗର ଢେମା ପିଛା ଉଡ଼ିଥିଲେ । ବର୍ତ୍ତମାନ ମୋଟେ ଅଛନ୍ତି ଦଶ । ହେଇ ମାତ୍ର ପାଞ୍ଚ... ଶେଷରେ ରହିଲା ଗୋଟିଏ । ସେହି ବୀର, ସେହି ଜିତିଲା ପ୍ରତିଯୋଗିତାରେ । ଏ ପ୍ରକାର ପ୍ରତିଯୋଗିତା ଆଉ କେଉଁଠି ହେବା ଜାଣିଛ ? ଯେଉଁ ପ୍ରତିଯୋଗିତାରେ ଜଣେ ଜିତେ; ଅଥଚ ଆଉ ସବୁ ମରନ୍ତି ?

ବିଜେତା ନାଗର ତା'ର ପୁରସ୍କାର ପାଏ । ସେ ଅବାଧରେ ଉର୍ଦ୍ଧ୍ୱ ଆକାଶରେ ଲୋକଲୋଚନ ଅଗୋଚରରେ ଆଲୋକର ପ୍ଲାବନ ମଧ୍ୟରେ ଆଲୋକ-କନ୍ୟା ରାଜଢେମାର ସୁଡଳ ସୁନ୍ଦର ଶରୀର ଆଲିଙ୍ଗନ କରେ—ନିବିଡ଼ ଭାବେ । ସେହି ଆକାଶରେ ସେହି ବୀର ନାଗର ସହିତ ସ୍ୱୟଂବରା ଢେମାର ଯୌନ ମିଳନ ହୁଏ । ରମଣ ବେଳେ ସେହି ବୀରପୁରୁଷର ମଧ୍ୟ ମୃତ୍ୟୁ ହୁଏ । ଢେମା ଅଙ୍ଗରେ ଲାଗି ସେ ଢଳିପଡ଼େ । ସେ ଅବଶ୍ୟ ମରେ । ମାତ୍ର ମରିବା ଆଗରୁ ସେ ଜୀବନସତ୍ତା ଢେମା-ଶରୀର ମଧ୍ୟରେ ଆରୋପ କରିଯାଏ । ତା'ର ମରଣ ତେଣୁ ମଙ୍ଗଳମୟ ହୁଏ ।

ଅଙ୍ଗେ ଅଙ୍ଗେ ରମଣ ଲାଞ୍ଛନା ବୋହି ସ୍ୱୟଂବରା ରାଜଢେମା ଦ୍ୟୁଲୋକରୁ ଭୂଲୋକକୁ ଓହ୍ଲାଇଆସେ । ନିର୍ଭୁଲ ଭାବରେ ସେ ମହୁମହଲର ପ୍ରବେଶଦ୍ୱାର ଆଗରେ ଚଉତରା ଉପରେ ଖସି ବସେ ! ଦ୍ୱାରଦେଶରେ କଟୁଆଳମାନେ ସାବଧାନ

ହୋଇଯାଆନ୍ତି । ନିଜ ନିଜର ଶୁଙ୍ଗିକାଯୋଡ଼ିକୁ ଟାଙ୍କ କରି ସିଧାସଳଖ ଉପରକୁ ଟେକି ରଖନ୍ତି । ଏହା ନୂତନ ରାଣୀଙ୍କୁ ଆଦ୍ୟ ଅଭିନନ୍ଦନ ।

ବିଭିନ୍ନ ସଂସ୍କୃତିରେ ସ୍ୱାଗତ ଜଣାଇବାର ଭିନ୍ନ ଭିନ୍ନ ଚଳଣି ଅଛି । ଆମେ ହାତଯୋଡ଼ି 'ନମସ୍ତେ' ଜଣାଉଁ । ଆଉ କେହି କେହି ସଲାମ୍ କରନ୍ତି । ଆଉ କେଉଁଠି କରମର୍ଦ୍ଦନ କରନ୍ତି । କେତେ ଲୋକ କୋଳାକୋଳି ହୋଇ ଶୁଭେଚ୍ଛା ଜ୍ଞାପନ କରନ୍ତି । କେଉଁଠି କେଉଁଠି ନାକରେ ନାକ ଘଷି ବା ଓଠରେ ଓଠ ଲଗାଇ ଚୁମା ଦିଆଦେଇ ହୋଇ ଅଭ୍ୟର୍ଥନା କରନ୍ତି । କେହି କେହି ମଧ୍ୟ ଫୁଲ ଚନ୍ଦନ ବା ଧୂପ ଦୀପ ଦେଇ ଅତିଥି-ଚର୍ଚ୍ଚା ଆରମ୍ଭ କରନ୍ତି । ସେହିପରି ମହୁମହଲରେ ସମ୍ମାନ ଦେବାର ପ୍ରଧାନ ସଙ୍କେତ ହେଉଚି ଶୁଙ୍ଗିକା ଉଠେଇ ନମସ୍ତେ କହିବା ।

କଟୁଆଳମାନଙ୍କ ସେହି 'ନମସ୍ତେ' କହିବା ବା 'ପ୍ରଣତି' ଜଣାଇବା ଖବର ବିଦ୍ୟୁତ୍ ବେଗରେ ସମଗ୍ର ମହୁମହଲ ମଧ୍ୟରେ ପ୍ରଚାରିତ ହୋଇଗଲା । ସଙ୍ଗେ ସଙ୍ଗେ ପଥ ଏବଂ ପୁର ସର୍ବତ୍ର ନୃତ୍ୟ ସଙ୍ଗୀତମୟ ଏକ ମହୋତ୍ସବ ଆରମ୍ଭ ହୋଇଗଲା । ଆଉସବୁ କାମ ବନ୍ଦ ହୋଇଗଲା; କେବଳ ଉତ୍ସବ ଏବଂ ଉତ୍ସବ । ଅଖଣ୍ଡ ଅକୁଣ୍ଠ ମହୋତ୍ସବ । ସେହି ଉତ୍ସବ ମଧ୍ୟରେ ନୂଆ ରାଣୀ ମହୁମହଲରେ ଅଭିଷିକ୍ତା ହେଲେ ।

ମହୁମହଲରୁ ସେବିକା ଏବଂ ଶ୍ରମିକ ମହୁକମାନେ ଦୁଆର ବାହାରକୁ ଆଗେଇ ଆସିଲେ । ସ୍ୱୟଂବରା ଜେମାଙ୍କୁ ଅଭିବାଦନ ଜଣେଇଲେ ଏବଂ ସମସ୍ତେ ମିଶି ଅତି ଶରଧା ଓ ସରାଗରେ ଜେମାଙ୍କୁ ଯଥୋଚିତ ଯତ୍ନରେ ଟେକି କାନ୍ଧରେ ବସେଇଲେ । ପଟୁଆର ସଜେଇ ଜେମାଙ୍କୁ ମହୁମହଲ ଭିତରକୁ ପାଛୋଟି ନେଲେ । ରାଜ-ଜେଲି ଖୁଆଇଲେ ।

ରାଜଜେମା ରାଣୀ ହୋଇଗଲା । ଏବେ ରାଣୀ ଯେଉଁଆଡ଼େ ଗଲେ ସେ ତା'ର ସମ୍ମାନ ପାଇବ । ମହୁମହଲର ଯାବତୀୟ କର୍ମ ଧର୍ମ ସେ ନିୟନ୍ତ୍ରଣ କରିବ । ଆଲୋକ ଏବଂ ଆକାଶର କନ୍ୟା ହୋଇ ବି ସେ ଆଉ ଆଲୋକ ଦେଖିବନାହିଁ । ଅନ୍ତତଃ ବରଷେ ପର୍ଯ୍ୟନ୍ତ ସେ ଆଉ ମହୁମହଲ ଛାଡ଼ି ଦ୍ୱାର ପର୍ଯ୍ୟନ୍ତ ବି ଆସିବ ନାହିଁ । ପକ୍ଷ ତା'ର ଭଙ୍ଗା ହୋଇ ରହିବ । ଉଡ଼ିବାର ଆବଶ୍ୟକତା ନାହିଁ । କାମ ତା'ର ଅଣ୍ଡା ପାରିବା । ନିଜ ଇଚ୍ଛା ଅନୁସାରେ ଗୋଟିଏ ମାଂସପେଶୀ ଚାଳନା କରି ସେ ହଜାର ହଜାର ମହୁକ-ଅଣ୍ଡା ଦେବ ଅଥବା ଶହ ଶହ ନାଗର-ଅଣ୍ଡା । ଦରକାର ହେଲେ ଗୋଠ ଭାଙ୍ଗିବାବେଳେ ସେହି ପୁଣି ଦେବ ଜେମା-ଅଣ୍ଡା । ରାଣୀ ମହୁମହଲର ହର୍ତ୍ତାକର୍ତ୍ତା ଏବଂ ଭାଗ୍ୟବିଧାତା ।

## ମହୁକ ଜୀବନ

ଅଭିଷେକ ପରେ ରାଣୀ ତା କାମ ଆରମ୍ଭ କରିଦିଏ । ସେବିକା ଏବଂ କଟୁଆଳମାନଙ୍କ ଗହଣରେ ସେ ଫେଣାରୁ ଫେଣା ବୁଲି ସବୁଆଡ଼େ ନଜର ପକାଇ ଦିଏ । ବିଜୟ-ସଂଗୀତ ସବୁଆଡ଼ୁ ଶୁଭେ । ଶେଷରେ ନବନିର୍ମିତ ଗୋଟିଏ ଫେଣାରେ ପହଞ୍ଚି ଅଣ୍ଡାଦେବା କାମର ଶୁଭ ଦିଏ । ଜୀବନକାଳ ମଧ୍ୟରେ ସେ ଲକ୍ଷ ଲକ୍ଷ ଅଣ୍ଡା ଦେବ । ତେବେ ଏଇ ପ୍ରଥମ ।

ପରିଷ୍କାର ପରିଚ୍ଛନ୍ନ କୋଷଟି ମଧ୍ୟରେ ମହୁକ-ରାଣୀ ଛୋଟ ଅଣ୍ଡାଟିଏ ପାରିଦିଏ । କମା (,) ଆକାରର ଅଣ୍ଡାଟି କୋଷ ତଳେ ଲାଗିରହେ । ଲମ୍ୱରେ ମାତ୍ର ଦେଢ଼ ମିଲିମିଟର । ଅଣ୍ଡାଟି ଦୁଇଦିନ ପର୍ଯ୍ୟନ୍ତ ସ୍ଥିର ହୋଇ ରହେ । ହେଲେ ତା ଭିତରେ ବହୁ ପରିବର୍ତ୍ତନ ଲାଗି ରହିଥାଏ । ତୃତୀୟ ଦିବସରେ ଅଣ୍ଡାର ଶକ୍ତ ଖୋଳ ଭାଙ୍ଗି ଗୋଟିଏ ଟିକି ପୋକ ବାହାରେ । ମହୁକ ଗଠନ ସହିତ ତା'ର କୌଣସି ସାଦୃଶ୍ୟ ନାହିଁ । ଟିକି ପୋକଟି ବରଂ ଛୋଟ ଧଳା ସଁବାଳୁଆ ଭଳି ଦେଖାଯାଏ । ଏହାକୁ ଶୂକ କୁହାଯାଏ ।



ତରୁଣୀ ସେବିକାମାନେ ସେହି ଶୂକଟିର ଯତ୍ନ ନିଅନ୍ତି । ନୂଆ ସେବିକାମାନେ ନିଜ ଶରୀର ମଧ୍ୟରେ ଏକପ୍ରକାର ଶକ୍ତିଶାଳୀ ସ୍ୱତନ୍ତ୍ର ଖାଦ୍ୟ ପ୍ରସ୍ତୁତ କରନ୍ତି । ତାହା ବରକ୍ଷୀର ଭଳି ବହଳିଆ ଏବଂ ଧଳା । ଏହାର ନାମ ରାଜ-ଜେଲୀ । ଗୋଟିଏ ସେବିକା ମହଣ-ଶାଳା ଭିତରେ ମୁଣ୍ଡ ପୂରେଇ ଭୋକିଲା ଶୂକ ନିକଟରେ ସେହି ରାଜ-ଜେଲୀରୁ ମେଞ୍ଚାଏ ଓକାଳିଦିଏ । ତିନି ଦିନ ପର୍ଯ୍ୟନ୍ତ ତରୁଣୀ ସେବିକାମାନେ

ସେହିପରି ଭାବରେ ଶୂକଟିକୁ ରାଜ-ଜେଲୀ ଖୁଆନ୍ତି । ତା ପରେ ପରେ ସେମାନେ ଶୂକର ଖାଦ୍ୟ ବଦଳେଇ ଦିଅନ୍ତି । ତାକୁ କେବଳ ପରାଗ-ପିଠା ଖାଇବାକୁ ଦିଆଯାଏ । ଏହିପରି ପୁଣି ତିନି ଦିନ । ସେତିକିରେ ଶୂକଟି ଏତେ ବଢ଼ିଯାଏ ଯେ, ତାହା ପ୍ରାୟ ସମୁଦାୟ କୋଷଟିକୁ ପୂର୍ଣ୍ଣ କରିଦିଏ ।

ସେବିକାମାନେ ଆଉ ଶୂକଟିକୁ ଖାଇବାକୁ ଦିଅନ୍ତି ନାହିଁ । ବଦଳରେ ତାକୁ ଶୁଆଇ ପକାନ୍ତି । ଶୋଇଲା ବ୍ୟକ୍ତିକୁ ଯେପରି ଘୋଡ଼େଇ ଦିଆଯାଏ, ସେହିପରି ସେହି ବଢ଼ିଲା ଶୂକଟିର କୋଷ-ମୁହଁ ମହଣର ଘୋଡ଼ଣୀ ଦ୍ୱାରା ମୁଦିଦେଇ ସେବିକାମାନେ ନିବୃତ୍ତ କରିଦିଅନ୍ତି । ସେହି ମୁଦ୍ରିତ କୋଷ ମଧ୍ୟରେ ଶୂକଟି ନିଜେ ନିଜେ ସୂକ୍ଷ୍ମ ରେଶମ ଖିଅରେ ଏକ ଘନ କମ୍ବଳ ବୁଣି ନିଜ ସର୍ବାଙ୍ଗକୁ ଆବୃତ କରିଦିଏ ।



ମୁଦଦିଆ କୋଷ ଭିତରେ କମ୍ବଳ ଘୋଡ଼େଇ ହୋଇ ଶୂକଟି ଶୋଇଯାଏ । ସେହି କମ୍ବଳ ଘୋଡ଼ଣୀକୁ ଗୋଟିକା (କୋକୁନ) କୁହାଯାଏ ଏବଂ ତା ମଧ୍ୟରେ ବନ୍ଦୀ ହୋଇଥିବା କ୍ଷୁଦ୍ର ଜୀବଟିକୁ ପ୍ୟୁପା ବା ପିଉପା କୁହାଯାଏ । ଗୋଟିକା ମଧ୍ୟରେ ପିଉପା ଆଉ ହଲଚଲ ହୁଏ ନାହିଁ । ସବୁ ଗତିବିଧି ବନ୍ଦ ହୋଇଯାଏ ।

ଯେଉଁ ଶୂକଟି ଲୋଭେଇ ଏତେ ଏତେ ଖାଉଥିଲା, ସେ ଏବେ ପରାଗ ଗଦା ମଧ୍ୟରେ ଜଡ଼ ପରି ସମାଧିରେ ପଡ଼ି ରହିଲା ।



ମାତ୍ର ସେହି ସମାଧି ଅବସ୍ଥାରେ ଅଦୃଶ୍ୟ ଅଲକ୍ଷ୍ୟ ଭାବରେ ରେଶମୀ କମ୍ବଳ ଭିତରେ ଏକ କୁହୁକୀ ପରିବର୍ତ୍ତନ ରୂପ ନିଏ । ଦିନକୁଦିନ ଗୋଟିକା ଭିତରେ ପ୍ୟୁପାଟି ଅଧିକରୁ ଅଧିକ ମହୁକ ପରି ଦେଖାଯାଏ । ମୁଣ୍ଡ, ତିନିଯୋଡ଼ା ଗୋଡ଼, ଖୁବ୍ ପତଳା ମସଲିନ୍ ପରି ଦୁଇଯୋଡ଼ା ପକ୍ଷ ପ୍ରଭୃତି କ୍ରମେ କ୍ରମେ ପ୍ରକାଶିତ ହୁଏ ।

ଶେଷରେ, କୋଷ ମଧ୍ୟରେ ରାଣୀ ଅଣ୍ଡା ଦେବାର ଠିକ୍ ୨୧ ଦିନ ପରେ, ତରୁଣ ମହୁକଟି ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇ ସମାଧି ଭାଙ୍ଗି ବାହାର ଜଗତକୁ ବାହାରି ଆସିବାକୁ ପ୍ରସ୍ତୁତ ହୁଏ । ତା'ର ଶକ୍ତ କଳପାଟି ବ୍ୟବହାର କରି ସେ ମହଣର ଢାଙ୍କୁଣୀଟି କାଟି ଗୋଟିଏ କଡ଼କୁ ଠେଲିଦିଏ । ତା'ପରେ ହୃତ୍‌ପିଣ୍ଡ ଆକାରର ତା'ର ମୁହଁଟି ଦ୍ୱାରମୁହଁରେ ଦେଖାଯାଏ । କୋଷ ଭିତରୁ ଛୋଟ ମହୁକଟି ଗୁରୁଣ୍ଡି ଗୁରୁଣ୍ଡି ବାହାରି ଆସେ ଏବଂ ଫେଣା ଉପରେ ଥକା ମାରେ ।



ଦୁଇ କଡ଼ରେ ଢାଲି ପକ୍ଷ ଦୁଇଯୋଡ଼ା ଭାଙ୍ଗିହୋଇ ଦୃଢ଼ଭାବରେ ରହିଥାଏ । ପୋହଳା ମାଳ ପରି ଶୁଙ୍ଗିକା ଦୁଇଟି ସାମନାରେ ବଢ଼େଇ, ହଲେଇ ଏବଂ ତଳେ ଛାଟି ପିଟି ତରୁଣ ମହୁକଟି ବାସନା ବାରେ ଏବଂ ବାହାର ଦୁନିଆ ସମ୍ବନ୍ଧରେ ଧାରଣା କରିବାକୁ ଶିଖେ । ପୁରୁଖା ମହୁକଟିଏ ତା'ରି ପାଖ ଦେଇ ଚରତର ହୋଇ ଯାଉଁ ଯାଉଁ କ୍ଷଣେ ଅଟକିଯାଏ । ନିଜ ଶୁଙ୍ଗିକା ଦୁଇଟି ତରୁଣ ମହୁକ ଉପରେ ଆଉଁଶିଦେଇ କଅଁଳେଇ କ'ଣ କହେ । ସତେ ଅବା କହୁଛି, ''ସାବାସ୍ ! ସାବାସ୍ ! କେଡ଼େ ଡଉଲ ଡାଉଲ ମହୁକ ଭଉଣୀଟିଏ ଆମର ଏଠି !''

ଟିକି ମହୁକଟି ସାହସ ପାଏ । ସେ ମୁହଁ ଖୋଲି ଲମ୍ବ ଜିଭଟି ପତେଇଦିଏ । ପୁରୁଣା ମହୁକ ନିଜ ଜିଭ ଅଗରେ ଟିକିଏ ମହୁ ତା ଉପରେ ଦେଇଦିଏ ଏବଂ ନିଜ ବାଟରେ ଆଗେଇଯାଏ । ଟିକି ମହୁକଟି ମହୁତକ ଢୋକିଦିଏ ଏବଂ ଚାରିଆଡ଼କୁ ନଜର ପକାଏ ।



ପିଲା ଶ୍ରମିକାଟି ବା ଖଟୁଣୀଟି ଆଶ୍ଚର୍ଯ୍ୟମୟ କାମ-ନାଚ-ଗୀତପୂର୍ଣ୍ଣ ଜଗତ ଦେଖେ । ଅଗଣିତ ମହୁକ ମହୁମହଲ ଛାଡ଼ି କୁଆଡ଼େ ଉଡ଼ି ଯାଉଛନ୍ତି, ଅଥଚ ଆଉ ଅନେକ ଫେରି ଆସୁଛନ୍ତି । ମହୁଫେଣା ଉପରେ କେତେ କାମ ଲାଗିଛି, ନାଚ ଚାଲିଛି । କାମ ନାଚ ସଙ୍ଗେ ଗୀତ ମିଶିଛି । ସବୁଥିରେ ହୁସିଆରୀ ଶୃଙ୍ଖଳା, ସବୁଆଡ଼େ ନିଖୁଣ ସଫାସୁତୁରା, ପରିଚ୍ଛନ୍ନତା । ପିଲା ଶ୍ରମିକାଟି ଦେଖିବା କାମ ଛାଡ଼ି ଅସଲ କାମରେ ଲାଗିଯାଏ ।

ପିଲା ଶ୍ରମିକାର ପହିଲା କାମ ହୁଏ ଫେଣା ସଫା କରିବା । ଫେଣାରେ ଧାଡ଼ି ଧାଡ଼ି ହୋଇ ଲାଗି ରହିଥିବା କୋଠରୀ ଭିତରେ ମୁଣ୍ଡ ପୂରେଇ ପିଲା ଶ୍ରମିକା ମଳ ମଳି ଯାହା ଦେଖେ, ସବୁ ବୋହିଆଣି ବାହାରେ ପକାଇଦିଏ ।

କୋଠରୀ ଭିତର ପାଲିସ୍ କରି ଚକ୍ ଚକ୍ କରିଦିଏ । କାମ ଭିତରେ ଫେଣାର ଭଣ୍ଡାର ଅଂଶରେ ଠୁଳ ହୋଇଥିବା ମହୁ ଓ ମହୁପିଠା ଖାଇଦେଇ ଆସୁଥାଏ ।

ଫେଣା ଭିତରେ କାମ କରୁ କରୁ ଶ୍ରମିକାଟିର ଡେଣା ପାକଳ ହୋଇ ଦୃଢ଼ ହୋଇଯାଏ । ସେ ଚଞ୍ଚଳ ଚଞ୍ଚଳ ଚାଲିପାରେ ଓ ପକ୍ଷ-ସଞ୍ଚାଳନ କରିପାରେ । ତାର ପିଠିର ଦୁଇ ପାଖରେ ଯୋଡ଼ାଏ ଯୋଡ଼ାଏ କରି ଦୁଇଯୋଡ଼ା ପତଳା ଝିଲିରି



ପକ୍ଷ । ପକ୍ଷ ଯୋଡ଼ିକ ଆଗ ପଛ ହୋଇ ଥାଏ । ଆଗ ପକ୍ଷର ପଛ ଧାର ପଛ ପକ୍ଷର ଆଗ ଧାର ସହିତ ଖାପ ଖୁଆଇ ଛନ୍ଦି ହୋଇଯାଏ । ତେଣୁ ଦୁଇଟି ପକ୍ଷ ଲାଗିଯାଇ ଚାପ-ପକ୍ଷ ହୋଇ ଗୋଟିଏ ହୋଇଯାଏ । ଉଡ଼ିବାରେ ତାର ବିଶେଷ ସୁବିଧା ହୁଏ । ପିଲା ଶ୍ରମିକା ପୁରୁଖା ହୋଇ ସେବିକା ବନିଯାଏ ।

ସେବିକା ପୁଣି ଦୁଇ ପ୍ରକାର ତରୁଣୀ ସେବିକା ଓ ପୋଖତ ସେବିକା । ତରୁଣୀ ସେବିକା ପୋଖତ ଶୂକମାନଙ୍କ ସେବା କରେ । ମହୁ ଓ ମହୁପିଠା ଭଣ୍ଡାରରୁ ବୋହିଆଣି ପୋଖତ ଶୂକଙ୍କୁ ଖୁଆଏ । ଏଇ କାମ ଚାଲେ । ଏଇ ସମୟ ଭିତରେ ତାଙ୍କର ଦେହରେ ପରିବର୍ତ୍ତନ ହୁଏ । ମୁଣ୍ଡ ମଧ୍ୟରେ ଗୋଟିଏ ନୂତନ ଗ୍ରନ୍ଥି ନିର୍ମିତ ହୁଏ । ତାହା ହେଉଛି 'ମହୁକ-ଦୁଗ୍ଧ' ଗ୍ରନ୍ଥି । ସେହି ଗ୍ରନ୍ଥିରେ ରାଜ-ଜେଲୀ ତିଆରି ହୁଏ । ତାହା ଏକ ବିଶେଷ ପ୍ରକାର ଖାଦ୍ୟ । ଯେଉଁ ଖାଦ୍ୟ ରାଣୀମା ସବୁଦିନେ ଖାଏ ଓ ନୂଆ ବାହାରିଥିବା ଶୂକ ମାତ୍ର ତିନିଦିନ ଖାଏ ।

ପୋଖତ ସେବିକା କେବଳ ରାଜ-ଜେଲୀ ପ୍ରସ୍ତୁତ କରିପାରେ । ସେ ଏବେ ରାଣୀମା'ର ମଣୋହି ସେବାରେ ଲାଗେ ଓ ପରେ ତରୁଣ ଶୂକକୁ ରାଜ-ଜେଲୀ ଖୁଆଏ । ଏଇପରି କେତେ ଦିନ ବିତିଯାଏ । କେତେ ଦିନ ଅର୍ଥ ମାସେ ବା ପକ୍ଷେ ନୁହେଁ । ଗୋଟିଏ ହାତର ଆଙ୍ଗୁଳିମାନଙ୍କ ଦ୍ୱାରା ଗଣି ହେଉଥିବା ସଂଖ୍ୟା । ତା'ପରେ ସେବିକାର ମହୁକ-ଦୁଗ୍ଧ ଗ୍ରନ୍ଥିଟି ଅକାମୀ ହୋଇ ଶୁଖିଯାଏ । ସେବିକା କାମ ଶେଷ ହୋଇଯାଏ । ସେତେବେଳକୁ ତା'ର ବୟସ ମାତ୍ର ଦୁଇ ସପ୍ତାହ ।

ପନ୍ଦର ଦିନ ବୟସରେ ସେବିକା ପରିଣତ ହୁଏ ଏକ ମହଣକାରିଣୀ ଖଟୁଣୀରେ । ସେତେବେଳକୁ ତାର ପେଟତଳେ ଥିବା ମହଣ-ପ୍ରସ୍ତୁତକାରୀ ଗ୍ରନ୍ଥିଗୁଡ଼ିକ ବିକଶିତ ହୋଇଥାଏ । ସେହି ଗ୍ରନ୍ଥିଗୁଡ଼ିକରେ ଛୋଟ ଛୋଟ ଅତି ପତଳା ସଫେଦ ରଙ୍ଗର ମହଣ ଖଣ୍ଡମାନ ତିଆରି ହୁଏ । ମହଣ ତିଆରି ଅତ୍ୟନ୍ତ କଠିନ କାମ । ଉପରୁ ତଳକୁ ଗୋଟିଏ ଗୋଟିଏ ମହୁକ ଓହଳି ରହି ସ୍ଥିର ହୋଇ ଖୁବ୍ ଏକାଗ୍ର ଲୟରେ ରହି ଏହି କାମ କରିବାକୁ ହୁଏ । ତା' ଆଗରୁ ପେଟେ ପେଟେ ବହଳ ମହୁ ପିଇବାକୁ ହୋଇଥାଏ । ମହଣ ଗଢ଼ିବାକୁ ଶକ୍ତି ଓ କଞ୍ଚାମାଲ୍ ମହୁରୁ ମିଳେ । ଏଇ ମହଣ ଗଢ଼ା କାମ ତିନି ଦିନ ଲାଗି ରହେ । ତା'ପରେ ମହୁକ ଦ୍ୱାରପାଳ କାମ କରେ ।



ପ୍ରାୟ ଅଢ଼େଇ ସପ୍ତାହ କାଳ ମହୁକ ବରାବର ମହୁମହଲ ଭିତରେ ଥିଲା । ମହଣ ଗଢ଼ିବା କାମ ବି ଅନ୍ଦର ମହଲ କାମ । ସେସବୁ କାମରେ ଉଡ଼ିବା ବିଶେଷ ଦରକାର ନ ଥିଲା । ତେଣୁ ଡେଣାର କାମ ଥିଲା ଅଳ୍ପ । ଫେଣାର ତାତି ଅନୁଛ ରଖିବା ପାଇଁ ଜୋର୍‌ରେ ଡେଣା ହଲାଇବାକୁ ପଡୁଥିଲା ଯାହା । ଏବେ ପ୍ରହରୀକାମ ପାଇଁ ତାକୁ ମହୁମହଲ ବାହାରକୁ ଆସିବାକୁ ହେଲା । ଏଥିପାଇଁ ଦେହ, ଶୁଙ୍ଗିକା, ଡେଣା ଓ ନାହୁଡ଼ ଶକ୍ତ ହେବା ଚାହି । ଏବେ ସେ ପ୍ରସ୍ତୁତ ।

ସେ ଦ୍ୱାରଦେଶରେ ଜଗିରହି, ଯିଏ ବାହାରୁ ଆସି ମହୁମହଲ ଭିତରେ ପଶୁଛି ତାକୁ ପରଖି ଚିହ୍ନି ବାଟ ଛାଡ଼ିବାକୁ ହେବ । ବାହାରର କେହି ହୋଇଥିଲେ ତାକୁ ଆକ୍ରମଣ କାରିବାକୁ ହେବ । ପିମ୍ପୁଡ଼ି, ବଲୁରୀ, ମୂଷା ମହୁମହଲର ଶତ୍ରୁ । ଇତର ମହୁମାଛି ମଧ ତାର ପ୍ରଧାନ ବଇରୀ । ଏଠି ଭାଲୁ ଓ ମଣିଷଙ୍କ କଥା କୁହାଯାଉ ନାହିଁ । ସେମାନେ ଜବରଦସ୍ତ ନୃଶଂସଭାବେ ମହୁମହଲ ନଷ୍ଟ କରିଦିଅନ୍ତି । ମହୁକ, ଅଣ୍ଡା, ଶୂକ, କୋଷ, ଫେଣା ଆଦି ନଷ୍ଟ କରିଦିଅନ୍ତି । ନିଜ ସ୍ୱାର୍ଥ ପାଇଁ ସର୍ବନାଶ କରନ୍ତି । ମଣିଷମାନେ ତ ମହୁମହଲ ତଳେ ଭୟଙ୍କର ନିଆଁ ଲଗେଇ ସବୁ ମହୁକଙ୍କୁ ପୋଡ଼ି ଦିଅନ୍ତି । ତେବେ କେତେକ ବିଚାରବନ୍ତ ମଣିଷ ମହୁଚାଷ କରନ୍ତି । ମହୁକମାନଙ୍କ ପାଇଁ ବାକ୍ସଘର କରି ତାକୁ ପାଳନ୍ତି । ସମୟକ୍ରମେ ପରଖ କରି କେବଳ ବଳକା ମହୁ ସଂଗ୍ରହ କରି ନିଅନ୍ତି । ସେହି ମହୁକ-ପାଳକ ମଣିଷଙ୍କ କଥା ସ୍ୱତନ୍ତ୍ର । ସେମାନେ ମହୁକର ମିତ୍ର; ଶତ୍ରୁ ନୁହନ୍ତି । ମହୁକ କିପରି ମୂଷା ଆଦି ଶତ୍ରୁଙ୍କୁ ଜବଦ କରେ, ତାହା ପରେ ବିଚାର କରାଯିବ ।

ଏବେ ଦେଖିବା ଆସ, ପ୍ରହରୀ ମହୁକ ଆଉ କ'ଣ କରୁଛି । ସେ ଖଣ୍ଡିଉଡ଼ା ଦେଉଛି । ସବୁବେଳେ ମହୁମହଲକୁ ସାମନାରେ ରଖି ସେ ଉଡୁଛି ଓ ପଡୁଛି । ଚାରିଆଡ଼େ ରୂପେଲୀ ସୁନେଲୀ ଖରା ଆବୋରି ରହିଛି । ଆଖି ଝଲସି ଯାଉଛି । ତେବେ ତୀବ୍ର ଆଲୋକ ପସରାକୁ ଦବେଇ ଏଆଡ଼େ ସେଆଡ଼େ, ଏଠି ସେଠି ସବୁଜ ଗଛ ଲତା ଗୁଳ୍ମ ଓ ଘାସ । ସେସବୁର ଶୀତଳ ଶାଗୁଆ ରଙ୍ଗ ଆଖିକୁ ଆରାମ ଦେଉଛି । ପୁଣି ଉଚ୍ଚରେ, ସବା ଉପରେ କୋମଳ ଶ୍ୟାମଳ ରଙ୍ଗ । ସେସବୁ ରଙ୍ଗ ଭିତରେ ମେଳ ଅଛି । ଭଲ ଲାଗୁଛି ।

ଉଡ଼ିଲାବେଳେ ମହୁକ ରଙ୍ଗର କୁହୁକ ଏବଂ ଗନ୍ଧର ଯାଦୁଘରର ମେଳଣ ସହିତ ପରିଚିତ ହୁଏ । କି ଗଭୀର ଓ ବିସ୍ତୃତ ରୋମାଞ୍ଚକର ଅନୁଭୂତି ! ସେଥିରେ ସେ ତନ୍ମୟ ନ ହେବା ପାଇଁ ଉପରୁ ତଳକୁ ଖସିଆସି ମହୁମହଲ ଦ୍ୱାରଦେଶରେ ପହଞ୍ଚିଯାଏ । ଏଠାରେ ମନେ ରଖିବା କଥା, ମହୁକ ମଥାରେ ପ୍ରାୟ ବାରହଜାର

ଆଖି ଅଛି ରଙ୍ଗ ବାରିବା ପାଇଁ (ତିନୋଟି ସରଳ ଆଖି ଓ ଦୁଇଟି ପୁଞ୍ଜାକ୍ଷି) ଏବଂ ହଜାର ହଜାର ଆଘ୍ରାଣ-ଗର୍ତ୍ତ ଥିବା ଶୁଙ୍ଗିକା ଦୁଇଟି ଅଛି । ତେଣୁ ଆଲୋକ ଏବଂ ଗନ୍ଧ ବାରିବା ଶକ୍ତି ଖୁବ୍ ପ୍ରଖର ଓ ପ୍ରଚଣ୍ଡ । ତାହାକୁ ବିବ୍ରତ ନ କରି ମହୁକ ମନ୍ଥର ଗତିରେ କାମରେ ଲଗେଇ ଶିଖେ । ତାର ଲାଭ ହୁଏ । ସେ ବାଟବଣା ନ ହେବା ପାଇଁ ମହୁମହଲକୁ ସବୁବେଳେ ନଜରରେ ରଖି ଉଡୁଥାଏ; ଉପର ତଳ ହେଉଥାଏ ବା ଚକର ମାରୁଥାଏ । କ୍ରମେ କ୍ରମେ ଦୂରକୁ ଦୂରକୁ ଉଡୁଥାଏ । ତେଣୁ ପ୍ରହରୀକାମ ସାଙ୍ଗରେ ଭବିଷ୍ୟତରେ ମଧୁ ବା ପୁଷ୍ପରସ ସଂଗ୍ରହ ପାଇଁ ପାରଙ୍ଗତା ଲାଭ କରିଥାଏ ।

ତୃତୀୟ ସପ୍ତାହ ବୟସ ପାରି ହୋଇଗଲେ ପ୍ରହରୀ ମହୁକ ମଧୁ-ସଂଗ୍ରାହକରେ ବଦଳିଯାଏ । ସେ ମହୁମହଲଠୁଁ ଦୂରକୁ ଯାଇ ତାଜା ଫୁଲ ଠାବ କରି ମଧୁରସରେ ଉଦର ପୂର୍ଣ୍ଣକରି ଗୃହକୁ ଫେରେ । ନୂଆ ମହୁରୁ ଟିକିଏ ଟିକିଏ ଅନ୍ୟମାନଙ୍କୁ ଚଖେଇ ଦେଇ ବାହକ ମହୁକକୁ ଦେଇଦିଏ । ନୂଆ ମଧୁର ପ୍ରାପ୍ତିସ୍ଥାନ ସମ୍ବନ୍ଧରେ ନାଚ ମାଧ୍ୟମରେ ସଙ୍କେତ ଦେଇ ସେ ପୁଣି ମଧୁ ଯୋଗାଡ଼ କାମରେ ଚାଲିଯାଏ । ତା ପଛେ ପଛେ ଆହୁରି ହଜାର ହଜାର ମହୁକ ମଧ ସେଇ ଫୁଲ ପେଣ୍ଡକୁ ଉଡ଼ି ଯାଆନ୍ତି । ମଧୁ ସହିତ ଫୁଲର ପରାଗ ସଂଗ୍ରହ କରି ବୋହି ଆଣନ୍ତି । ପରାଗ ପେଟରେ ବୋହିବାକୁ ହୁଏ ନାହିଁ । ପଛ ଗୋଡ଼ ଦୁଇଟିରେ ଜଙ୍ଘ ପାଖେ ଗୋଟିଏ ଗୋଟିଏ ଟାଙ୍ଗୁଡ଼ି ବା ଝୁଡ଼ି ଅଛି । ସେହି ଟାଙ୍ଗୁଡ଼ି ଚାରିପଟେ ଲମ୍ବା ଲମ୍ବା, ଆଣ୍ଠ ଆଣ୍ଠ (ଅନମନୀୟ) ଲୋମ ରହିଛି । ତାରି ଭିତରେ ଫୁଲ-ପରାଗ ଖେଞ୍ଜି ଖେଞ୍ଜି ଭରିଦେଇ ମହୁକ ବୋହି ଆଣନ୍ତି । ଅନେକ ଦୂର ପର୍ଯ୍ୟନ୍ତ ଓ ଅନେକ ଦିଗରେ ସେମାନଙ୍କୁ ଉଡ଼ିବାକୁ ପଡ଼େ । ଥରେ ମାତ୍ର ମହୁମହଲର ଠିକଣା ସେ ଭୁଲେ ନାହିଁ । ଠିକ୍ ମହଲ ଦ୍ୱାରରେ ସେ ଓହ୍ଲାଇ ପଡ଼େ । ଆଚମ୍ବିତ କରଣି । ଏହି କାମ ପ୍ରାୟ ଦୁଇ ସପ୍ତାହ ଲାଗିରହେ । ମହୁକର ବୟସ ପାଞ୍ଚ ସପ୍ତାହ ହୋଇଯାଏ ।

ପଇଁତିରିଶ ଦିନରେ ମହୁକର ଶକ୍ତି ପ୍ରାୟ ସରିଯାଏ । ସେ ସ୍ଥବିର ହୋଇଯାଏ । ତାର କାମିକା ଦମ୍ ଶେଷ ହୋଇଯାଏ । ତାର ପ୍ରାଣବାୟୁ ଥକିଯାଏ । ସେ ଦୁଇ ତିନି ଦିନ ମଧ୍ୟରେ ମରିଯାଏ । ଏକ କର୍ମମୟ ଜୀବନର ଅବସାନ ହୁଏ ।

## ଅଭିଯୋଜକ ମହୁକ

ପୂର୍ବ ଅଧ୍ୟାୟରେ ଏକ ଶ୍ରମିକ ମହୁକର ଜୀବନ-ବର୍ଣ୍ଣନାର ଶେଷରେ କୁହାଯାଇଛି ଯେ, 'ଏକ କର୍ମମୟ ଜୀବନର ଅବସାନ ହୁଏ' । ଏହା ଆଂଶିକ ଠିକ୍ । ଗୋଟିଏ

ମହୁକ କଥା ସେଥିରେ ବିଚାର କରାଯାଉଥିଲା ଏବଂ ସେହିଟି ମରିଗଲା । ଅଥଚ ମହୁମହଲରେ ୪୦/୫୦ ହଜାର ମହୁକ ଥା'ନ୍ତି । ତେଣୁ ମହୁମହଲ କଥା ପରଖ କଲାବେଳେ ଏକଲା ମହୁକର ସ୍ଥାନ ନାହିଁ । ମହୁକ ମହଲକୁ ସମଗ୍ରଭାବରେ ଗୋଟିଏ ଜୀବନ୍ତ ଜୀବ ଭାବରେ ଗ୍ରହଣ କରାଯାଏ । ଏହା ବ୍ୟକ୍ତିଗତ ପତଙ୍ଗର ସଂଗ୍ରହ ନୁହେଁ; ମାତ୍ର ଏକ ସ୍ପନ୍ଦନଶୀଳ, ଜୀବର ଜୀବନ । ବହୁ ଚମତ୍କାର ଚକ୍‌ମକୀ ଅଂଶରେ ଗଠିତ ଏକଲ ଜୀବ ।

ପୁରୁଣା ମହୁମହଲକୁ ଛାଡ଼ିଦେଇ ଯେତେବେଳେ ରାଣୀମା ଅଗଣିତ ମହୁକ ଶ୍ରମିକଦଳଙ୍କୁ ନେଇ ନୂଆ ଫେଣା ଆରମ୍ଭ କରେ, ସେଇ ହେଉଛି ମହଲର ଶିଶୁ ଅବସ୍ଥା । ତା'ପରେ ତରୁଣ ଅବସ୍ଥା, ପୁଣି ଯୁବା ଅବସ୍ଥା, ନୂଆ ଦଳ ଗଠନ ଓ ଶେଷରେ ସ୍ଥବିର ବା ବୁଢ଼ା ଅବସ୍ଥା । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ, ମହୁମହଲର ମରଣ ନାହିଁ । ବୁଢ଼ା ଅବସ୍ଥାରୁ ତାହା ପୁଣି ଯୁବା ଅବସ୍ଥାକୁ ଫେରି ଆସିପାରେ । ଏହା ଏକ ନବୀଭବନ ବ୍ୟବସ୍ଥା ।

କେବେ କେବେ ଦୈବ-ଦୁର୍ବିପାକରେ ମହୁମହଲ କ୍ଷତବିକ୍ଷତ ହୋଇଯାଏ । ଖାଦ୍ୟାଭାବରେ ପଡ଼ି ଭୋକିଲା ରହିପାରେ ବା ବାହାର ଶତ୍ରୁ-କବଳରେ ପଡ଼ି ଲୁଣ୍ଠିତ ହୋଇପାରେ । ମାତ୍ର ରାଣୀମା ବା କେତେକ ଶ୍ରମିକ ଓ ଗୋଟିଏ ଫେଣା ନଷ୍ଟ ହେଲେ ତଦ୍ୱାରା ମହୁମହଲ ନିଶ୍ଚୟ କ୍ଷତିଗ୍ରସ୍ତ ହୁଏ । ଦାରୁଣ ଯନ୍ତ୍ରଣାରେ ବହୁ ବ୍ୟଥିତ ହୋଇ ବିଳାପ କରିଥାଏ; ମାତ୍ର ରାଣୀମା ବା ଗୋଟିଏ ଫେଣା ଓ କେତେକ ଶ୍ରମିକ ବଞ୍ଚି ଯାଇଥିଲେ ମହଲର ମରଣ ହୁଏ ନାହିଁ । ତୁରନ୍ତ ଜୀଇବା ଉଦ୍ୟମରେ କ୍ଷତିକୁ ସୁଧାରି ନେଇ ଏହା ପୁଣି ଗଢ଼ି ହୋଇଯାଏ, ଠିକ୍ ଯେପରି ଜ୍ୱରରୋଗ-ଆକ୍ରାନ୍ତ ଏକ ପ୍ରାଣୀ । ବିଚିତ୍ର ବିଧାନ । 'କାୟା ପାଲଟ' ପରି ମହୁମହଲର ନବଯୌବନ ପ୍ରାପ୍ତି ହୁଏ ।

ମହୁମହଲରେ ଗୋଟିଏ ରାଣୀମା (ପ୍ରାୟ ଅଢ଼େଇ ସେଣ୍ଟିମିଟର ଲମ୍ବ), ଅନ୍ତାଧିକ ପଚିଶ ହଜାର ଶ୍ରମିକ (ପ୍ରାୟ ସଉଆ ଏକ ସେଣ୍ଟିମିଟର ଲମ୍ବ) ଓ ଅନ୍ତାଧିକ ଏକଶହ ନିଷ୍କର୍ମା ନାଗର (ଆକାରରେ ଶ୍ରମିକ ପରି; ମାତ୍ର ମୋଟା ଓ ପେଟା) ଥାଆନ୍ତି । ସବୁ ନାଗର ଓ ଅଧିକାଂଶ ଶ୍ରମିକ ନଷ୍ଟ ହୋଇଗଲେ ବି ସେମାନଙ୍କ ସଂଖ୍ୟା ପୁଣି ପୂରଣ ହୋଇଯାଏ । ରାଣୀମା ମରିଗଲେ ଅଧିକ ଅସୁବିଧା । ସେ ଚ ଦିନକୁ ପଖାପାଖି ଏକହଜାର ଅଣ୍ଡା ଦେଉଥିଲା । ଅଣ୍ଡାଦେବା କାମ କେବଳ ରାଣୀମା'ର । ନାଗରଗୁଡ଼ାକ ପୁରୁଷ । ସବୁ ଶ୍ରମିକ ରାଣୀ ଭଳି ମାଈ ଲିଙ୍ଗୀ, ଅଥଚ ବନ୍ଧ୍ୟା, କିନ୍ତୁ ଦୈବାତ୍ ରାଣୀର ମରଣ ହେଇଗଲେ ଯେକୌଣସି ଶ୍ରମିକ

କିମ୍ୱା ଶ୍ରମିକ ଶୂକକୁ କେବଳ ଅମୃତସମ ରାଜ-ଜେଲୀ ଖୁଆଇଲେ ତାହା ଜେମା ବନିଯିବ । ଶ୍ରମିକ ଜେମା ହେଲେ ତାର ଅବଲୁପ୍ତ ଯୌନାଙ୍ଗ ପୁନଶ୍ଚ ବିକଶିତ ହେବ, ହେଲେ ସେ ଦିନକୁ ତିରିଶ ଖଣ୍ଡେ ଅଣ୍ଡା ଦେବ । ଶ୍ରମିକ ଶୂକ ଜେମା ପାଲଟିଲେ ବହୁ ଅଧିକ କ୍ଷମତାରେ ଅଣ୍ଡା ଦେବ । ହେଲେ କ'ଣ ହେବ, ସେସବୁ ଅଣ୍ଡା ଅନିଷିକ୍ତ ବା ଅଣ୍ଡିର ଶୂକ ସହିତ ଅଯୁଗ୍ମିତ । ତେଣୁ ସେଥିରୁ ବାହାରନ୍ତି କେବଳ ନାଗର, ଯେଉଁମାନେ ଅନାବଶ୍ୟକ । ସଙ୍ଗମ ପରେ ରାଣୀ ନିଷିକ୍ତ ଅଣ୍ଡା ଦେଇପାରେ । ନିଷିକ୍ତ ଅଣ୍ଡାରୁ ଶ୍ରମିକ ବାହାରନ୍ତି ।

ଆକସ୍ମିକ ଦୁର୍ଘଟଣା କାଳରେ ଶ୍ରମିକ ମହୁକଙ୍କ ତାଳବଦ୍ଧ ଜୀବନଯାତ୍ରା ଆଂଶିକ ବା ସମ୍ପୂର୍ଣ୍ଣ ବଦଳିଯାଏ । ଆବଶ୍ୟକତା ଅନୁସାରେ ଅନେକ ଶ୍ରମିକଙ୍କୁ ଏକା ପ୍ରକାର କାମ କରିବାକୁ ପଡ଼େ । ଫେଣା ଭାଙ୍ଗିଯାଇଥିଲେ ଛୋଟ ବଡ଼ ସମସ୍ତଙ୍କୁ ମହଣ ଗଠନ କାମରେ ଲାଗିବାକୁ ହୁଏ । ଯାହାଙ୍କର ମହଣ ଗଢ଼ଣି କାଳ ଗଡ଼ିଯାଇଛି, ଓ ଫଳରେ ମହଣ-କଳ ବନ୍ଦ ହୋଇଯାଇଛି, ତାଙ୍କର ପୁଣି ମହଣ-କଳ ସଜଡ଼ା ହୋଇଯାଏ । ସମସ୍ତେ ଏକାବେଳେକେ ମହଣ ଗଢ଼ି ଦିଅନ୍ତି ଏବଂ ଫେଣା ବନେଇବା ସହଜ ହୁଏ । ବାହ୍ୟ ଆକ୍ରମଣ କାଳରେ ଏକଜୁଟ ହୋଇ ସମସ୍ତେ କଟୁଆଳ ସାଜି ଯୁଦ୍ଧ କରନ୍ତି । ସେତେବେଳେ ଆଉ ବୟସ-ଭେଦ ଦେଖାଯାଏ ନାହିଁ ।

କେତେକ କାଳ ପାତ୍ର ସଂଯୋଗରେ ଦୁର୍ଘଟଣା ନ ଘଟିଲେ ମଧ୍ୟ ମହୁମହଲର ଆଭ୍ୟନ୍ତରୀଣ ଶୃଙ୍ଖଳାରେ ପରିବର୍ତ୍ତନ ହୋଇଥାଏ । ରାଣୀମା'ର ବୟସ ଦୁଇ ବର୍ଷ ପୂରିଗଲେ ତୃତୀୟ ବର୍ଷରେ ହୁଏତ ସେ ଆଉ ନିଷିକ୍ତ ଅଣ୍ଡା ପାରିବା କ୍ଷମତା ହରାଇଥାଏ । କାରଣ ମହୁକଜେମା ମାତ୍ର ଥରେ ଉଡ଼ନ୍ତା ରମଣରେ ମାତେ । ଗୋଟିଏ ନାଗର ସହତ ତାର ଯୌନ-ସଂସର୍ଗ ସ୍ଥାପିତ ହୁଏ । ନାଗରଟିର ସମସ୍ତ ଶୁକ୍ର ଜେମା ଶରୀର ମଧ୍ୟରେ ସଞ୍ଚିତ ହୋଇ ରହେ । ଅଣ୍ଡା ପାରିଲାବେଳେ ନିଜ ଅଣ୍ଡ ସହ ଶୂକଟିଏ ଯୁଗ୍ମନ କରାଇ ଯେଉଁ ଅଣ୍ଡା ପାରେ, ତାହା ଶ୍ରମିକ ହୁଏ ବା ଜେମା ହୁଏ । ଯୁଗ୍ମନ ନ ହୋଇ ଅଣ୍ଡାଟି ପାରିଲେ ତାହା କେବଳ ନାଗର ହୁଏ । ତେଣୁ ନିଷିକ୍ତ ଅଣ୍ଡା ଅଧିକ ହୋଇଗଲେ ଶୁକ୍ର ଶେଷ ହୋଇଯାଏ । ରାଣୀମା ଆଉ ନିଷିକ୍ତ ଅଣ୍ଡା ପାରିପାରେ ନାହିଁ । ସୁତରାଂ ସେପରି ରାଣୀମା'ର ଆବଶ୍ୟକତା ଆଉ ନ ଥାଏ । ସେହି ପରିସ୍ଥିତି ପହଞ୍ଚିବା ଆଗରୁ ନୂତନ ରାଣୀ ପାଇବା ପାଇଁ ଆୟୋଜନ ଚାଲେ । ଶ୍ରମିକମାନେ ୩-୫ଟି ଗମ୍ଭୀରିଘର ସମୟକ୍ରମେ ବନେଇ ଦିଅନ୍ତି । ସେଥିରେ ରାଣୀମା ନିଷିକ୍ତ ଅଣ୍ଡା ଦିଏ । ସେଇ ଅଣ୍ଡାରୁ ବାହାରିଥିବା ଶୂକକୁ ଶ୍ରମିକମାନେ ବରାବର ରାଜ-ଜେଲୀ ଖୁଆନ୍ତି । ଶୂକ ପାଲଟେ ଜେମା ।

ଢେମା ସାର ବଛା ମହୁ ପିଇ ବଡ଼ ହୁଏ । ଦିନେ ସେ ରମଣ-ଉତ୍ସବ ଉଡ଼ାରେ ମହଲ ଛାଡ଼ି ଚାଲିଯାଏ । ନାଗରମାନେ ତା ପିଛା ଉଡ଼ନ୍ତି । ଗୋଟିଏ ନାଗର ଉଚ୍ଚ ଆକାଶରେ ଢେମା ସଙ୍ଗେ ରମଣ କରେ ଓ ମରିଯାଏ । ଢେମା ରାଣୀରେ ପରିଣତ ହୁଏ । ସେ ମହୁମହଲକୁ ଫେରିଆସେ ଓ ବିଶ୍ରାମ ନିଏ । ତା'ପରେ ଖୋଜି ଖୋଜି ପ୍ରଥମେ ପୁରୁଣା ରାଣୀ ଓ ପରେ ଅନ୍ୟାନ୍ୟ ଗମ୍ଭୀରା ମୁହଁ ଖୋଲି



ବାକୀ ଥିବା ଢେମାଙ୍କ ମୁଣ୍ଡ କାଟ କରିଦିଏ । ତାର ରାଜୁତି ଚାଲେ । ଢେମାର ରମଣ ପରେ ଓ ଫୁଲ କମିଥିବା ଋତୁରେ ଶ୍ରମିକାମାନେ ନାଗରମାନଙ୍କୁ ହତାଦର କରନ୍ତି । ଖାଇବାକୁ ଦିଅନ୍ତି ନାହିଁ । ନାଗରମାନେ ଉପାସରେ ମରିଯାନ୍ତି ବା ତାଙ୍କୁ ମାରି ଦିଆଯାଏ ।

ଏହିପରିଭାବେ ମହୁମହଲ ସମୟ-ଉପଯୋଗୀ କାମ କରେ । ସର୍ବଦା ଅନୁକୂଳନ କାମ ବା ଉପଯୋଜନ କାମ ହୁଏ । ସବୁ କାମ ଛାଏଁ ଛାଏଁ ହୁଏ । ବିଶେଷତଃ ଶ୍ରମିକାମାନେ କାମଗୁଡ଼ିକ ଛାଏଁ ଛାଏଁ କରନ୍ତି ।

କେହି ଶ୍ରମିକାକୁ କ'ଣ କରିବାକୁ ହେବ, ତାହା କହେ ନାହିଁ ।

କେହି ଶ୍ରମିକାକୁ କିପରି କରିବାକୁ ହେବ, ତାହା କହେ ନାହିଁ ।

କେହି ଶ୍ରମିକାକୁ କେବେ କରିବାକୁ ହେବ, ତାହା କହେ ନାହିଁ ।

ଶ୍ରମିକା କୌଣସି ଶିକ୍ଷା ନ ପାଇ ଆପଣାଛାଏଁ କରିଯାଏ ।

ସଦ୍ୟଜାତ ମଣିଷପିଲା ଛାଏଁ ଛାଏଁ ମା' ଥନରୁ ଚୁଚୁମି ଦୁଧ ଖାଏ । ସେ ଛାଏଁ ଛାଏଁ ମା'ର ହାତଆଙ୍ଗୁଳି ଧରି ଖେଳେ । ଏଇ କାମ କରିବାକୁ ମଣିଷପିଲାକୁ ଶିକ୍ଷା ଦେବାକୁ ହୁଏ ନାହିଁ । ମହୁକ-ପିଲା ବିନା ଶିକ୍ଷାରେ ଅନେକ ଅନେକ ଆଚମ୍ବିତ କାମ କରିପାରେ । ବିନା ଶିକ୍ଷାରେ କୌଣସି କାମ କରିବାକୁ ପ୍ରବୃତ୍ତି ବୋଲାଯାଏ । ଆମର ଶିକ୍ଷା ଅଧିକ; ମାତ୍ର ମହୁକର ପ୍ରବୃତ୍ତି ପ୍ରବଳ ।

## ଫୁଲ ଓ ମହୁକ

ସମାଜ, ଶିକ୍ଷା ବା ସଂସ୍କୃତି କଥା ବିଚାର କଲାବେଳେ ଜୀବନ ସଂଗ୍ରାମ ନିୟମର ଦୁହାଇ ଢେର ଉଠେ । କୋକୁଆ ଭୟ ପରି ସେଇ ଅଦେଖା ବିପଦ-ବୋଝ ଆମ ମୁଣ୍ଡରେ ଚପାଇ ଦିଆଯାଏ । ତା'ରି ଭାର ତଳେ ସବୁ ଯୁକ୍ତି ଚାପି ହୋଇ ରହେ । ସତେ ଯେପରି ପ୍ରକୃତି-ରାଇଜରେ କେବଳ 'ଧର୍ ମାର୍ ଗିଲ୍' ଧରଣ ଅଚ୍ଛିଣ୍ଡା ଭାବରେ ଲାଗି ରହିଛି; ସଖା ସମ୍ବନ୍ଧ ହୋଇ କିଛି ନାହିଁ । କିନ୍ତୁ ପ୍ରକୃତିକୋଳରେ ଏ କିସମର ଭୀଷଣ ବିଭୀଷିକା କ୍ୱଚିତ୍ ଦେଖାଯାଏ । ଜଗତର ଜୀବମାନଙ୍କର ଜୀବନ-କାହାଣୀ ଆଲୋଚନା କଲେ ଜଣାଯାଏ, ସେମାନଙ୍କ ମଧ୍ୟରେ ମିତ୍ରଭାବ ବା ସହଯୋଗ ବହୁଳ ପରିମାଣରେ ସୁବିଧାଜନକ ଓ ସୁଗଠିତ ହୋଇଛି । ଝଙ୍କାର ୯ମ ବର୍ଷ ୧ମ (୧୯୫୭ ଏପ୍ରିଲ) ସଂଖ୍ୟାରେ ପ୍ରକାଶିତ ଲେଖକଙ୍କ 'ସହଜୀବିତା' ନାମକ ପ୍ରବନ୍ଧରେ ଆହାର ସମସ୍ୟା ସମାଧାନ କରିବାପାଇଁ ଜୀବଗଣଙ୍କ ମଧ୍ୟରେ କିପରି ଦୃଢ଼ ସମ୍ପର୍କ ଗଢ଼ି ଉଠିଛି, ତାହାରି ଆଲୋଚନା କରାଯାଇଥିଲା । ଅନ୍ୟ ଏକ ଉଦ୍ଦେଶ୍ୟରେ ଫୁଲ ଓ ମହୁକ ମଧ୍ୟରେ କିପରି ଘନିଷ୍ଠ ସହଯୋଗ ସମ୍ଭବ ଓ ସଫଳ ହୋଇଛି, ସେହି କଥା ଏଇ ପ୍ରବନ୍ଧରେ ବିଚାର କରାଯାଉଛି ।

ଆହାର ଗୋଟିଏ ସହଜାତ ଆବଶ୍ୟକତା ଓ ପ୍ରବୃତ୍ତି, ତା ତଳକୁ ମୈଥୁନ । ନିଜ ଦେହ ରକ୍ଷାକରିବାକୁ ଖାଇବା ଆବଶ୍ୟକ; ବଂଶରକ୍ଷା କରିବାକୁ ଲୋଡ଼ା ମୈଥୁନ

ବା ରମଣ । ପୁରୁଷ ଓ ସ୍ତ୍ରୀ, ଦୁହିଁଙ୍କୁ ନେଇ ରମଣ । ଏହାଫଳରେ ପୁରୁଷର ରେତ ସ୍ତ୍ରୀର ରଜ ସଙ୍ଗେ ମିଳିଯାଏ । ତେଣୁ ଗର୍ଭାଧାନ ବା ଗର୍ଭସଞ୍ଚାର ହୁଏ । ପ୍ରାଣୀମାନଙ୍କ ପରି ଉଦ୍ଭିଦମାନଙ୍କର ମଧ ସନ୍ତାନ-ପ୍ରସବ କରିବାପାଇଁ ବିବାହ ଅପରିହାର୍ଯ୍ୟ । ପ୍ରାଣୀ ହେଉ, ବା ପାଦପ ହେଉ ଜନନ ନିମିତ୍ତ ଏକେଇ କୋଟୀର ମରଦ ମାଈଙ୍କ ଯୋଡ଼ିକୁ ଏଠାରେ ବିବାହ ବୋଲି ଧରାଯାଉଛି । ଏଇ ରକମ ବିବାହରେ ଫୁଲର କରଣି ଅତି କୌତୁକପ୍ରଦ ।



ଫୁଲଟି ସୁନ୍ଦର ସୁକୁମାର । ଫୁଲର ଛଟକ ଓ ମହକ ସହଜରେ ଓ ସହଜରେ ମଣିଷର ମନକୁ କିଣିନିଏ । ରଙ୍ଗ, ଢଙ୍ଗ, ରସ, ବାସ, ସବୁଥିରେ ଫୁଲକୁ ଜିତିବାକୁ କିଛି ନାହିଁ । ଫୁଲର ଉପମା ଫୁଲ ଏକା । ତେଣୁ ପ୍ରଣୟ, ପୂଜା ଓ ପ୍ରଣତିର ପ୍ରତୀକ ଭାବେ ଫୁଲର ଆଦର ସର୍ବବ୍ୟାପ୍ତ । କିନ୍ତୁ ଆମ ପ୍ରେମ-ପ୍ରୀତିର ଶଙ୍କୁ ହୋଇ ଆମ କାମ କରିବାପାଇଁ ଫୁଲ ଗଢ଼ାଯାଇ ନାହିଁ କି ବଢ଼େ ନାହିଁ । ଫୁଲର ଠିକଣା କାମ ନିଆରା । ଫୁଲ ଗୋଟିଏ ବହୁ ବାହା-ବେଦୀ ।

ଫୁଲଟିର ମଝିରେ ଥାଏ ଗର୍ଭମଣ୍ଡଳ । ଗର୍ଭମଣ୍ଡଳ ତଳଭାଗରେ ଅଣ୍ଡଗୁଡ଼ିକ ଲୁଚି ରହିଥାଏ । ଏହି ଅଂଶଟି ସୁରେଇ ଗଣ୍ଡିପରି ପେଟୁଆ । ତା'ର ଉପର ଆଡ଼ ନଳ ପରି ସରୁ ହୋଇଥାଏ ଏବଂ ସବା ଉପର ଚତରେଇ ଗର୍ଭପୀଠ ଗଢ଼ିଥାଏ । ଗର୍ଭମଣ୍ଡଳ ଚାରି ପାରୁଶରେ ଥାଏ କେଶରଚକ୍ର । ଏଇ ଚକ୍ରରେ ଅନେକଗୁଡ଼ିଏ

କେଶର ସଜଡ଼ା ହୋଇଥାଏ । ପ୍ରତ୍ୟେକ କେଶର ଗୋଟିଏ ଝୁମୁକା ପରି । ତଳେ ଗୋଟିଏ କାଠି ଓ ଉପରେ ଗୋଟିଏ ପେଡ଼ି । ପେଡ଼ି ଭିତରେ ଅନେକ ଟିକି ଟିକି ପରାଗରେଣୁ ସାଇତା ହୋଇଥାଏ । ଗର୍ଭର ଅଣ୍ଡ ଫୁଲର ମାଈ ଓ କେଶର ପେଡ଼ିର ପରାଗ ମରଦ । ଏମାନେ ବିବାହଯୋଗ୍ୟ ହେଲେ ଫୁଲ ଫୁଟେ । ପରାଗ-ପେଡ଼ି ଫାଟିଯାଏ ଓ ଗର୍ଭପୀଠ ଫୁଲି ରହେ । ଗର୍ଭମଣ୍ଡଳଟିକୁ କନିଆ-ଗଡ଼ ବୋଲି ବିଚାର କଲେ କେଶର-ଚକ୍ରଟି ହେବ ବର-ଆଖଡ଼ା । କିନ୍ତୁ ସାଧାରଣରେ ଗୋଟିଏ ଫୁଲର କନିଆ ସଙ୍ଗେ, ସେହି ଫୁଲର ବର ବିଭା ନିଷିଦ୍ଧ । ଏକା ଗଛର ମରଦ ମାଈ ଭାଇଭଉଣୀ । ତାଙ୍କ ଭିତରେ ବାହାଘର ପ୍ରକୃତିର ନାପସନ୍ଦ କଥା ବା ଅଘଟଣ । ତେଣୁ ଗୋଟିଏ ଗଛ ବା ଲତାର ଫୁଲରି କନିଆ ସଙ୍ଗେ ସେହି ଜାତୀୟ ଅନ୍ୟ ଗଛ ବା ଲତାର ଅସଗୋତ୍ର ବର ବିବାହ କରିବା ବିଧିବିଧାନ । ଏଇ ପ୍ରଥାକୁ ପର ପୀରତି ବା 'ପର ପରାଗଣ' ବୋଲାଯାଏ । ଗର୍ଭପୀଠ ଉପରେ ବରଯୋଗ୍ୟ ପରାଗ ପଡ଼ିଲେ ଫୁଲର ବାହାଘର ହୋଇଥାଏ । ଗର୍ଭପୀଠ ଉପରୁ ପରାଗ ଗର୍ଭ ମଧ୍ୟକୁ କ୍ରମେ ବଢ଼େ । ଶେଷରେ ପରାଗର ରେତ ଅଣ୍ଡର ରଜରେ ଲୀନ ହୋଇଯାଏ । ଗର୍ଭାଧାନ ହୁଏ ।



ଉଦ୍ଭିଦମାନେ ଅଚଳ ଜୀବ । ସେମାନେ ଆସ୍ଥାନ ମାଡ଼ି ବଢ଼ନ୍ତି । ତେବେ ଗୋଟିଏ ତରୁର କନିଆ ସଙ୍ଗେ ଅନ୍ୟ ତରୁର ବର ବାହାଘର ପୁଣି ହୁଏ କିପରି ? ସ୍ୱୟଂ ପ୍ରଜାପତି ଘଟସୂତ୍ର, ଆଚମ୍ବିତ କଥା ! ନାନା ଉପାୟରେ ସପୁଷ୍ପ ପାଦପମାନଙ୍କ ପରପରାଗଣ ସମ୍ପନ୍ନ ହୋଇଥାଏ । ଘାସ ଫୁଲର ବିବାହ ବାୟୁ-ପ୍ରବାହଦ୍ୱାରା, ଶିମିଳୀ ଫୁଲରେ ପକ୍ଷୀମାନଙ୍କ ଦେଇ, ରଙ୍ଗଣୀ ଫୁଲରେ ପ୍ରଜାପତି ଯୋଗୁଁ ଏବଂ ଗେଣ୍ଡୁ ଆଦି ଅନେକ ଫୁଲର ବାହାଘର ମହୁକ ଦ୍ୱାରା ସମ୍ଭବ ହୁଏ । ଯେତେ ଯେତେ ଫୁଲରେ ପରପରାଗଣ ହୁଏ, ସେଥିରେ ଅଧିକାଂଶ ପତଙ୍ଗମାନଙ୍କ ଦେଇ ସାଧିତ ହୋଇଥାଏ ଏବଂ ପତଙ୍ଗ ପାଟକ ମଧ୍ୟରୁ ମହୁକ ଶତକଡ଼ା ୮୦ ଭାଗ ଫୁଲର ବାହା କାମ ତୁଲେଇ ଥାଏ ।

ଗର୍ଭମଣ୍ଡଳ ଓ କେଶରଚକ୍ର ବାଦ୍ ଫୁଲର ଆଉ କେତେକ ଅଙ୍ଗ ମଧ୍ୟ ଅଛି । ସେଥି ଭିତରୁ ପାଖୁଡ଼ା-ମେଢ଼ ପ୍ରଧାନ । ପାଖୁଡ଼ା-ବେଢ଼ା ଯୋଗୁଁ ଫୁଲର ଅସଲ ଶୋଭା ଶିରୀ । ପାଖୁଡ଼ାର ଗଢ଼ଣ ଓ ଛବି-ଛଟା ମହୁକକୁ ଦୂରରୁ ଟାଣିଆଣିବା ପାଇଁ । ତେବେ ମହୁକ ପରି କାମିକା ପ୍ରାଣୀ କେବଳ ଠାଣି ବା ଛଇ-ଛଟକ ଦେଖି ଭଳିବା ସହଜ ନୁହେଁ । ତେଣୁ ଫୁଲ ମଧ୍ୟରେ ତା'ର ମନଲାଖି ଖାଇବା-ପିଇବାର ସୁବନ୍ଦୋବସ୍ତ ଥାଏ । ସେତିକି ଯୋଗୁଁ ମହୁକ ଫୁଲରୁ ଫୁଲ ଉଡ଼ି ଗଛରୁ ଗଛ ଉଡ଼ି ଫୁଲର ବାହାଘର ବା ପରପରାଗଣ ଘଟଣ କରେ ।

ଫୁଲର ବାହାଘର ସାଧନ କରିବା ପାଇଁ ମହୁକ ଏକାନ୍ତ ପ୍ରବୀଣ । ସେ ଯେପରି ନିଶ୍ଚିତ ନିୟମରେ ଏହି କାର୍ଯ୍ୟ କରିପାରେ, ଅନ୍ୟ କୌଣସି ପତଙ୍ଗ ତାହା କରିବାକୁ ସମର୍ଥ ନୁହନ୍ତି । ଫୁଲ-ପରାଗ ସଙ୍ଗେ ମେଳ ରଖି ମହୁକ କାମ କରୁଥାଏ । ଏଥିରେ ଦୁଇ ପଟୁ ଦୁହିଁଙ୍କର ଲାଭ ହୁଏ ।

ଗୋଟିଏ ଗୋଟିଏ ମହୁଫେଣାରେ ପ୍ରାୟ ପଚିଶ ପଚାଶ ହଜାର ମହୁକ ଏକତ୍ର ରହନ୍ତି । ଫେଣା ଗୋଟିକରେ ୭୫ ହଜାର ଯାଏ ମହୁକ ଥିବା ବିରଳ ନୁହେଁ । ସେମାନଙ୍କ ଭିତରୁ କେବଳ ଗୋଟିଏ ମାତ୍ର ରାଣୀମା' । ତାକୁ 'ରାଣୀ ମାଛି' (ରାଣୀମା') ବୋଲାଯାଏ । ଆଉ ସମସ୍ତଙ୍କୁ ଏକାଠି ମିଳେଇ ଠୁଳରେ ଚଳେଇବାରେ ରାଣୀମା' ହେଉଛି ଏକମାତ୍ର ଯୋଗସୂତ୍ର । ରାଣୀର କାମ ତିନୋଟି । (୧) ଅତି ସୁକୁମାର ରାଣୀଭୋଗ ମଣୋହି କରିବା, (୨) ଫେଣାର ଚାହିଦା ମୁତାବକ୍ ନିଜ ଅଙ୍ଗରୁ ରାଣୀ ମଦ ଝରାଇବା, ଓ (୩) ମରିବା ପର୍ଯ୍ୟନ୍ତ ଦିନକୁ ଦୁଇ ହଜାର ଯାଏ ଡ଼ିମ୍ବ ପାରିବା । ତାଜୁବ୍ କଥା ଯେ, ଡ଼ିମ୍ବଗୁଡ଼ିକର ଲିଙ୍ଗ ରାଣୀର ଖିଆଲ ଉପରେ ନିର୍ଭର କରେ । ରାଣୀ ଚାହିଁଲେ ହେବ ମାଈ ଅଥବା ମରଦ । ତେବେ କାଳଭେଦରେ ସେ ଖହେକେ ମୋଟେ ପାଞ୍ଚ ଦଶଟି ଦିଏ

ମରଦ-ଡିମ୍ବ ଏବଂ ଆଉସବୁ ମାଈ ଡ଼ିମ୍ବ । ମରଦ ମହୁକଯାକ କିଛି କାମକୁ ନୁହନ୍ତି । କାମଦାମ ନକରି ଖାଇ ପିଇ ବଢ଼ନ୍ତି, ଆଉ ରସିକ ନାଗର ସାଜି ଗୁଣୁଗୁଣୁ ଗୀତ ଗାଇ ଫେଣା ପାରୁଶରେ ଉଡ଼ି ବୁଲୁଥାଆନ୍ତି । ସେମାନେ ନିଜେ ନିଜେ ଖାଇ ବି ଜାଣନ୍ତି ନାହିଁ । ତାଙ୍କୁ ବରାବର ଖୁଆଇଦେବାକୁ ହୁଏ । ରାଣୀ-ଝିଅ ଜେମାଙ୍କ ବାହାଘରକୁ ସ୍ୱୟମ୍ବର ହେବ ଓ ଅଡ଼ା କରାଯାଇ ଜେମାପାଖେ ଆପଣା ଆପଣାକୁ ସଅଁପି ଦେବେ ଏଇ ସପନରେ ମଗନ ରହି 'ନାଗର'ମାନେ ଭୋଳ ଥାଆନ୍ତି । କିନ୍ତୁ ଜେମା କାହିଁ ? ଅବଶ୍ୟ 'ରାଣୀ' ହଜାର ହଜାର ମାଈଡିମ୍ବ ପାରେ । ସେଥିରୁ ମାଈ ମହୁକ ବାହାରନ୍ତି କିନ୍ତୁ, ସେମାନେ ସମସ୍ତେ ସାରାଜୀବନ ଅଭିଆଡ଼ି ବରତ ପାଳନ୍ତି । ରମଣ-ସୁଖ ସେମାନେ ଜାଣନ୍ତି ନାହିଁ କି ଶୂଙ୍କ. ବେଦନା ଭୋଗନ୍ତି ନାହିଁ । ସେମାନେ ଖଟୁଣୀ ବା ସେବିକା । ଗୋଷ୍ଠୀପାଇଁ ଖଟି ଖଟି ସେମାନେ ପ୍ରାୟ ପାଞ୍ଚ ଛ ହପ୍ତାରେ ମରିଯାନ୍ତି । କିନ୍ତୁ ରାଣୀଟି ବଞ୍ଚିରହେ ପ୍ରାୟ ତିନି ବରଷ । ନାଗରଗଣଙ୍କ ଆୟୁଷ ସେବିକାଙ୍କ ପାଞ୍ଜିରେ । ରମଣ ପାଇଁ ତାର ଜନ୍ମ । ରମଣ ଋତୁରେ ସେମାନେ ଅଧିକ ସଂଖ୍ୟାରେ ଥାଆନ୍ତି ଓ ରମଣ ଋତୁ ଶେଷରେ ହାଣ ଖାଇ ମରନ୍ତି ।

ସେବିକାମାନେ ତାଙ୍କ ଦିହକର ପ୍ରଥମ ଅଧାକ ଫେଣାରେ ପାଳି କରି ନାନା ରକମ କାମ କରନ୍ତି । କେତେ କୋଠମହୁ ଖାଇ ଖାଇ ମହଣ ଗଢ଼ନ୍ତି । ସେହି ମହଣ ତାଙ୍କ ତଳି ପେଟର କେତୋଟି ଠଣାରେ ଗଳି ପଡ଼େ । ମହଣରୁ ପତଳା ସରୁଆ ରିବନ୍ ତିଆରି ହୁଏ । ତାକୁଇ ଯୋଡ଼ି ଯୋଡ଼ି ଅଳପବୟସୀ ସେବିକାମାନେ ସମାନ ସମାନ ଆୟତନବିଶିଷ୍ଟ ଛ' କୋଣିଆ ମହଣ-କାନ୍ଥି ଘରା ଗଢ଼ି ଫେଣା ବଢ଼ାନ୍ତି । ସେହି ଘରାଗୁଡ଼ିକରେ 'ରାଣୀ' ଡିମ୍ବ ପାରେ । ଖଟୁଣୀଙ୍କ ତାଳୁରୁ ଏକ ପ୍ରକାର ରସ ଗଳେ । ତାହା ଭାରି ଲଘୁପାକ, ପୁଷ୍ଟିକର ଓ ରୁଚିକର ଖାଦ୍ୟ । ତାହାକୁ ରାଣୀଭୋଗ ବୋଲାଯାଏ । ଡିମ୍ବରୁ ଶୂକ ବାହାରିଲେ ତାକୁ ଖଟୁଣୀ (ସେବିକା) ତିନି ଦିନ ରାଣୀ ଭୋଗ ଖୁଆଏ । ତାପରେ ମହୁରେ ପରାଗ ମିଶେଇ ଏକ ପ୍ରକାର ପିଠା ପ୍ରସ୍ତୁତ କରି ସେମାନେ ଶୂକଙ୍କୁ ଖୁଆନ୍ତି । ସେହି ପିଠା ହେଉଛି ମହୁଫେଣାର କେଶର । ସେବିକାମାନେ ମଧ ଡେଣା-କମ୍ପନ ଦ୍ୱାରା ଫେଣା ଭିତରେ ବାୟୁ ସଂଚାଳନ ବ୍ୟବସ୍ଥା କରନ୍ତି । ସେମାନଙ୍କ କୌଶଳଯୋଗୁ ଫେଣା ଭିତର ତାତି ବିଭିନ୍ନ ଋତୁରେ ପ୍ରାୟ ସମାନ ରହେ । ବାହାରେ ଶୀତ ଯେତେ ହେଉ ପଛେ ସେମାନେ ଦେହକୁ ଦେହ ଲଗାଲଗି ହୋଇ ରହି ଫେଣା ଭିତରକୁ ଉଷୁମ ରଖନ୍ତି । ତେଣୁ ଫେଣା ତାତିର ବେଆଡ଼ା ଉଠ୍‌ପଡ଼ ସମ୍ଭବ ହୁଏ ନାହିଁ । ସେବିକାମାନେ ଫେଣାକୁ ସଫାସୁତୁରା ରଖନ୍ତି; ଖାଦ୍ୟ କୋଠ ସମ୍ଭାଦି ରଖନ୍ତି ଓ ପ୍ରୟୋଜନ ଅନୁସାରେ

ପାଣି ବୋହି ଆଣି ଫେଣାରେ ଜମେଇ ରଖନ୍ତି । ଏସବୁ ବାଦ୍ ଫେଣାରେ ବଡ଼ କାମ ହେଉଛି ରାଣୀର ସେବା । ଖଟୁଣୀ ରାଣୀକୁ ସବୁବେଳେ ରାଣୀଭୋଗ ଖୁଆଉ ଥାଏ । ଆଉ ରାଣୀ ଅଙ୍ଗରୁ ଯେଉଁ ରାଣୀମଦ ନିର୍ଗତ ହୁଏ, ତାକୁ ଚାଟି ନେଇ ଅନ୍ୟାନ୍ୟ ସଭିଙ୍କି ବାଣ୍ଟି ଦିଏ । ରାଣୀ ମଦର ଭାରି ଗୁଣ । ତା'ରି ଯୋଗୁ ସେବିକାମାନେ ଆପଣା କଥା ଭୁଲି ଗୋଷ୍ଠୀ ପାଇଁ ଖଟନ୍ତି ଏବଂ ସେମାନଙ୍କ ଯୌନ-ପ୍ରବୃତ୍ତି କେବେ ଜାଗ୍ରତ ହୁଏ ନାହିଁ ।

ସେବିକାମାନେ ଅଧା ଉମର ତକ୍ ତାଲିମ୍ ପାଆନ୍ତି ଅସଲ କାମ ପାଇଁ । ସେହି କାମ ହେଉଛି: ଫେଣାକୁ ଆକ୍ରମଣରୁ ରକ୍ଷାକରିବା ଏବଂ ଖାଦ୍ୟ ଆହରଣ କରିବା । ତେଣୁ ଫେଣାର ଖଟୁଣୀମାନଙ୍କ ଭିତରେ ଯେଉଁ ଅଧାକ ପୁରୁଖା, ସେହିମାନେ ଫୁଲ ସହିତ ମାତନ୍ତି । ଫୁଲ ଖୋଜି ଖୋଜି ସେମାନେ ପ୍ରାୟ ମାଇଲିଏ ଦୂର ଉଡ଼ି ଯାଆନ୍ତି । ଅଭାବବେଳେ ଫେଣାଠୁଁ ପାଞ୍ଚ ମାଇଲ ଯାଏ ଉଡ଼ିଯିବା କଥା ଜଣା ଯାଇଛି । ଥରକ ଉଡ଼ାରେ ଗୋଟିଏ ମହୁକ ଘଣ୍ଟେ ଦୁଇଘଣ୍ଟା କାଳ ଫୁଲରୁ ଫୁଲ ଉଡ଼ି ରସ ଓ ପରାଗ ସଂଗ୍ରହ କରେ । ତାର ଥଳି ପୂରେ; ଭାର ପୂରେ । ସେତକ ପାଇଁ ତାକୁ ହାରାହାରି ପ୍ରାୟ ହଜାରେ ଫୁଲ ସଙ୍ଗେ ମିଳିବାକୁ ଓ ଖେଳିବାକୁ ହୋଇଥାଏ । ଗୋଟିଏ ଫୁଲରେ ସେ ଅଟକିଯାଏ ନାହିଁ । ମହୁକ ଖୁବ୍ କାମିକା । ଅନେକେ ଧାରଣା କରନ୍ତି ଯେ, ତା ଜୀବନରେ ଫୁରୁସତ୍ ମୋଟେ ନାହିଁ । ଏହା ଠିକ୍ କଥା ନୁହେଁ । ଗୋଟିଏ କାମିକା ମହୁକ ଦିନ ରାତି ଭିତରେ ତିନି ଭାଗରୁ ପ୍ରାୟ ଏକ ଭାଗ ସମୟ ଖଟେ । ଅନ୍ୟ ସମୟରେ ଅଳସରେ ଅୟସରେ କଟାଏ ।

ଖାଦ୍ୟସଂଗ୍ରାହୀ ମହୁକଙ୍କ ମଧ୍ୟରୁ କୋଡ଼ିକେ ଗୋଟିଏ ଆଗୁଆ କାମ କରେ । ଆଗୁଆ ମହୁକମାନେ ନୂଆ ନୂଆ ଫୁଲ ପସରା ଠାବ କରନ୍ତି । ଅନ୍ୟମାନେ ତାଙ୍କ ନିର୍ଦ୍ଦେଶ ପାଳି ଖାଦ୍ୟ ସବୁ ବୋହି ନିଅନ୍ତି । ତେବେ ଫେଣାର ସବୁ ଭାରବୁହାଯାକ ବେଳକେ କେବଳ ଗୋଟିଏ ରକମ ଫୁଲରୁ ଖାଦ୍ୟ ସଂଗ୍ରହ କରନ୍ତି । ଏକ ସମୟରେ ଗୋଟିଏ ଫେଣାର ବାହକମାନେ ଗୋଟିଏ ଥାନର ବିଭିନ୍ନ ଜାତି ଫୁଲ ସଙ୍ଖୋଳନ୍ତି ନାହିଁ । ଏହା ଏକ ପୁରୁଣା ଓ ଟାଣୁଆ ନିୟମ ଓ ଏହାଦ୍ୱାରା ଫୁଲର ଉପକାର ହୁଏ । ମହୁକ ଜାତିଏ ଫୁଲରେ ରସ ପିଇ ଅନ୍ୟ ଜାତି ଫୁଲରେ ମୁହଁ ମାରୁଥିଲେ ବାଇଜା ପରାଗ ଗର୍ଭପୀଠରେ ପଡ଼ନ୍ତା ଏବଂ ଫୁଲର ରମଣ-କାର୍ଯ୍ୟରେ ଗୁରୁତର ପ୍ରମାଦ ଉପଜାତ ହୁଅନ୍ତା ।

କୌଣସି ଆଗୁଆ ମହୁକ ନୂଆ ଫୁଲ କ୍ଷେତର ସନ୍ଧାନ ପାଇଲେ ସେ ଫୁଲ ରସ ପିଇ ଓ ଫୁଲ ପରାଗରେ ଅଙ୍ଗ ବୋଳି ହୋଇ ଫେରେ ଫେଣାକୁ । ଫେଣାରେ ପହଞ୍ଚି ସେ ତା ଆବିଷ୍କାର କଥା ପ୍ରକାଶ କରେ । ଆଗୁଆଙ୍କ ବିଚାର

ସାର ହୁଏ । ଯାହାର ଆବିଷ୍କାର ବଡ଼, ତାରି ଫୁଲ କାମ ଆଗ ହୁଏ । ଏଇଥି ପାଇଁ ମହୁକଙ୍କର ଗୋଟିଏ ବୁଦ୍ଧିଆ ଭାଷା ମଧ୍ୟ ଅଛି । ତାହା ଶବ୍ଦ ଭାଷା ନୁହେଁ, ନାଚ ଭାଷା । ନାଚଦ୍ୱାରା ଭାବପ୍ରକାଶ କରାଯାଏ ଓ ଆବିଷ୍କାରର ଇସାରା ଦିଆଯାଏ । ଆଗୁଆ ମହୁକଟି ତା ଗଣ୍ଡିଟି ହଲେଇ ଦୋହଲେଇ ଫେଣାର ଗୋଟିଏ ପାଖେ ତେରଛା ଭାବେ ତାଳୁରୁ ତଳକୁ ନାଚେ । ସେଇ ନାଚରୁ ବୁହାଳିମାନେ ନୂଆ ଫୁଲ ଥାନର ଦିଗ ଓ ଦୂରତା ଉଭୟ କଥା ଜାଣି ପାରନ୍ତି । ଫୁଲ ଯେଉଁଆଡ଼େ, ଫେଣାର ସେହି ପଟେ ନାଚ ହୁଏ, ଆଉ ସୂର୍ଯ୍ୟଙ୍କ ଅବସ୍ଥାନଠୁଁ ଯେଉଁ କୋଣରେ ଥାଏ, ତାହା ଫେଣା ମୁଣ୍ଡିରୁ ମୂଳକୁ ନାଚିବା ତେରଛା ଗାରରୁ ଜଣାପଡ଼େ । ଖୁବ୍ ବହଳ କଳାମେଘ ଆକାଶକୁ ଘୋଡ଼େଇ ରଖିଥିଲେ ବି ମହୁକ ସୂର୍ଯ୍ୟଙ୍କ ଅବସ୍ଥିତି ଥୟ କରିପାରେ । ତେଣୁ ସୂର୍ଯ୍ୟଙ୍କ ସହିତ ମିଳେଇ ଅନ୍ୟ ସ୍ଥାନର ଦିଗ ଧାର୍ଯ୍ୟ କରିବାରେ ଅସୁବିଧା ହୁଏ ନାହିଁ । ଗଣ୍ଡି ଦୋହଲେଇବା ଢ଼ଙ୍ଗରୁ ଦୂରତା ଜଣାଯାଏ । ପରୀକ୍ଷା କରି ଦେଖାଯାଇଛି ଯେ, ମହୁକଙ୍କ ଦିଗ ଓ ଦୂରତା ଜ୍ଞାନ ଖୁବ୍ ଖର । ସେମାନେ ଶତକଡ଼ା ୫ ଭାଗରୁ ଅଧିକ ଭୁଲ କରନ୍ତି ନାହିଁ । କିନ୍ତୁ ଦୂରତା ଧାରଣାରେ ଆମର ଶହେକେ ଛ କୋଡ଼ି ଭୁଲ୍ ହୁଏ ।

ଆଗୁଆ ମହୁକ ଫୁଲରୁ ଯେଉଁ ରସ ଶୋଷି ଆଣିଥାଏ, ତାହା ସେ ବୁହାଳିଙ୍କୁ ବାଣ୍ଟିଦିଏ । ସେଥିରୁ ଭାଗ ପାଇ ଏବଂ ତା' ଦେହରେ ଲାଗିଥିବା ପରାଗ ପରଶ ପାଇ ସେମାନେ ମହକ ବାରି ନିଅନ୍ତି । ଜାଣିବା କଥା ଯେ, ମହୁକଙ୍କ ଫେଣାରେ ସମଭାବର ପଟାନ୍ତର ନାହିଁ । ଯେ ଯେଉଁଥିକି ସମର୍ଥ, ସେ ସେହି କାମ କରେ । ହେଲେ ସଭିଏଁ କୋଠ ଖାଦ୍ୟରୁ ପାଆନ୍ତି ସମାନ ଭାଗ । ଅଧିକରେ ତାଙ୍କ ଗୋଷ୍ଠୀରେ ଖୁଆ ଖୁଇ ଧରଣ ବହୁତ ବେଶି । ଦୁଇଟି ମହୁକଙ୍କ ଭେଟ ହେବାକ୍ଷଣି ସେମାନେ ଖୁଆଖୁଇ ହୁଅନ୍ତି । ରାଣୀ ଗହଣରେ ଥିବା ଦଶ ବିଶ ସେବିକା ରାଣୀମଦ ଚାଟିବା ସୁବିଧା ପାଆନ୍ତି, ଅଥଚ ଖୁଆ ଖୁଇ ଭାବ ଯୋଗୁଁ ରାଣୀମଦ ସମସ୍ତଙ୍କ ଭିତରେ ବରାବର ବଣ୍ଟା ହୋଇଯାଏ । ସମସ୍ତେ ପ୍ରାୟ ସମାନ ଅଂଶ ପାଆନ୍ତି । ସେଇ ବିଧି ଅନୁସାରେ ଗୋଟିଏ ଆଗୁଆ ମହୁକର କଳେ ନୂଆ ଖାଦ୍ୟ ହଜାର ହଜାରଙ୍କ ଭିତରେ ସଞ୍ଚରି ଯାଏ ପାଞ୍ଚ ଦଶ ମିନିଟ ସମୟରେ । ନାଚ ଲାଗିଥାଏ, ଏଣେ ଖାଦ୍ୟ ବଣ୍ଟା ହେଉଥାଏ । ନାଚ ଓ ନମୁନା ଭାବ ଯେ ଧରି ପାରିଲା, ସେ ବି ନାଚରେ ଭାଗ ନିଏ । କ୍ରମେ କ୍ରମେ ସଭିଏଁ ନୂଆ ରସ ପିଇ ବିଭୋର ହୋଇ ନାଚନ୍ତି, ମାତନ୍ତି । ଶେଷରେ ନୂଆ ଫୁଲ-କ୍ଷେତ୍ରକୁ ଦଳ ବାନ୍ଧି ଉଡ଼ି ଯାଆନ୍ତି ।

ନାଚ ବୋଲ୍ ବା ଠାର ଅନୁସାରେ ମହୁକମାନେ ଫୁଲ ଆଡ଼କୁ ଉଡ଼ନ୍ତି । ଫୁଲ ଥାନ ନିକଟ ହେଲେ ଫୁଲର ବାସନା ବାରି ସେମାନେ ଦିଗ ସଜଖେଇ

ନିଅନ୍ତି । ତା ପରେ ଫୁଲ ଆଖ ପାଖରେ ପହଞ୍ଚିଲେ ଫୁଲର ରଙ୍ଗ ଗାଇଡ଼ କାମ କରେ । ଫୁଲ ଉପରେ ମହୁକ ଖସି ବସେ । ଏବେ ଆଗୁଆଠୁଁ ପାଇଥିବା ମହକ ସଙ୍ଗେ ଫୁଲର ମହକ ପରଖ କରି ଦେଖେ । ସମାନ ହେଲେ ସେ ସେଥିରେ ରସ ଓ ପରାଗ ଖୋଜେ । ତେଣୁ ପାଖାପାଖି ଅନେକ ପ୍ରକାର ଏକରଙ୍ଗୀ ଫୁଲ ଫୁଟିଥିଲେ ବି ମହୁକ କେବଳ ଗୋଟିଏ ଜାତିର ଫୁଲ ସଙ୍ଗେ ଘେନାଘେନି ଆରମ୍ଭ କରେ । ସେ ପାଏ ପରାଗରସ ଆଉ ଫୁଲକୁ ଦିଏ ରମଣ ସୁଯୋଗ । ମହୁକ ପାଏ ଆହାର, ଫୁଲ ପାଏ ମୈଥୁନ ।

ପରାଗ ସାଉଣ୍ଟି ଫୁଲେ ଫୁଲେ ବାଣ୍ଟିବା ଲାଗି ମହୁକର ଗଢ଼ଣ ଓ ଗୁଣ । ମହୁକ ବାଆ ବତାସକୁ ଏଡ଼ି ଉଡ଼ିପାରେ । ତେଣୁ ଫୁଲ କେଉଁଠି ହେଲେ ଅଗମ୍ୟ ହୋଇ ରହିପାରେନା । ମାଛିର ତଳ ଥୋମଣିଟି ନଳଭଳି ବଢ଼ି ଯାଇଥାଏ । ସେହି ନଳୀ ସାହାଯ୍ୟରେ ସେ ଫୁଲଭିତରୁ ରସ ଶୋଷିନିଏ ଏବଂ ପେଟ ଭିତରେ ଗୋଟିଏ ଥଳିରେ ସେହି ରସରୁ ମହୁ ତିଆରି କରେ । ତେଣୁ ପ୍ରକୃତରେ ମହୁକ ମଧୁପ ନୁହେଁ, ମଧୁକର ଅଟେ । ପୁଣି ତାର ଦେହ ଲୋମଶ । ତା ଦେହର ସେହି ଟାଉଁଶିଆ ଲୋମ ମଝିରେ ମଝିରେ ପରାଗ-ରେଣୁ ମେଞ୍ଚା ମେଞ୍ଚା ହୋଇ ଲାଗିଯାଏ ।





ତାର ପଛଗୋଡ଼ ଦୁଇଟିର ପାଦ ବ୍ରୁଶ ବା ପହଁରା ପରି ଏବଂ ନଳିଗୋଡ଼ ପାଛିଆ ପରି ହୋଇଥାଏ । ପହଁରାରେ ପରାଗ-ଧୂଳି ଝାଡ଼ିଝୁଡ଼ି ନେଇ ସେହି ପାଛିଆରେ ସାଇତି ରଖେ । ସେ ସେହି ପାଛିଆ ଦୁଇଟିରେ ତାର ନିଜ ଓଜନ ଯେତେ, ପ୍ରାୟ ସେତିକି ଓଜନର ପରାଗ ବୋହି ନେଇ ପାରେ । ତେବେ କେତେକ ପରାଗ ତା' ମୁଣ୍ଡରେ ଏବଂ ଶରୀରର ଅନ୍ୟାନ୍ୟ ଅଙ୍ଗରେ ଲପଟି ରହିଥାଏ । ଅନ୍ୟ ଫୁଲରେ ଖାଦ୍ୟ ସଂଗ୍ରହ କରୁ କରୁ ତାହା ଗର୍ଭପୀଠ ଉପରେ ଲାଗିଯାଏ ।

ମହୁକର ରୁଚି ଅନୁସାରେ ଫୁଲର ରଙ୍ଗ ଢ଼ଙ୍ଗ । ଫୁଲର ରୂପମାଧୁରୀ ଆମ ପାଇଁ ଗଢ଼ା ନୁହେଁ, ମହୁକର ଆଖି ପାଇଁ । ଆମେ ଯେପରି ବିଭିନ୍ନ ବର୍ଣ୍ଣ ବାରିପାରୁ, ମହୁକ ସେହିପରି ରଙ୍ଗର ବିଭେଦ ଧରିପାରେ । ସେ ଅବଶ୍ୟ ନାଲିରଙ୍ଗ ଦେଖିପାରେ ନାହିଁ; ନାଲି ରଙ୍ଗ ତାକୁ ପାଣ୍ଡୁର ଦେଖାଯାଏ । ତେବେ ଆମକୁ ଯାହା ଅଦୃଶ୍ୟ, ସେହି ପାରନୀଳାରୁଣ (Ultraviolet) ରଙ୍ଗ ସେମାନେ ଦେଖିପାରନ୍ତି । ସେଇଥିପାଇଁ ନାଲି ଫୁଲରେ ଏଇ ପାରନୀଳାରୁଣ ବର୍ଣ୍ଣବିଭବ ମିଶିଥାଏ ଏବଂ ଶତକଡ଼ା ପ୍ରାୟ





୩୦ ରଙ୍ଗର ଫୁଲରେ ଆମ ଅଦେଖା ସେହି ରଙ୍ଗ ଅଛି । ତେଣୁ ଆମକୁ ଏକରଙ୍ଗୀ ଦେଖାଗଲେ ବି ମହୁକ ଆଖିକୁ ରଙ୍ଗ ଝଲକ ବିଚିତ୍ର ଦିଶେ । ମନେହୁଏ, ଆମ ଆଖିକୁ ଯେତେ ସୁନ୍ଦର ସୁଠାମ ଦେଖାଯାଏ, ଫୁଲ ତାଠୁଁ ଅଧିକ ମନୋହର, ଅଧିକ ପ୍ରୀତିକର ।

ଫୁଲର ଗଢ଼ଣ ମଧ ମହୁକର ମନଲାଖି । ଆମେ ଯେତେ ଯେତେ ଆକାର ଚିହ୍ନି ମନେରଖୁ, ମହୁ ତାହା ପାରେ ନାହିଁ । ଆକାର ସମ୍ବନ୍ଧରେ ତାର କ୍ଷମତା ସଙ୍କୁଚିତ । ତେଣୁ ନାନାବିଧ ଆକାର ଭିତରୁ ସେମାନେ କେବଳ କେତୋଟି ଆକାର ସଠିକ ଭାବରେ ଚିହ୍ନଟ କରି ପାରନ୍ତି । ଗୋଟିଏ ହେଉଛି ସଦାବିହାରୀ ଫୁଲର ଆକାର, ଅନ୍ୟ ଗୋଟିଏ ହେଉଛି ସୂର୍ଯ୍ୟମୁଖୀ ଆକାର । ଏହିପରି ଆଉ କେତୋଟି ଆକାର ସେମାନେ ଚିହ୍ନିପାରନ୍ତି । ସେସବୁ ଫୁଲର ଆକାର ମାତ୍ର ଦୁଇଟି ।

ମହକ ଚିହ୍ନଟ ବିଷୟରେ ମହୁକୁ ବଳେଇ ଯିବ – ଏପରି କେହି ମଣିଷ ନାହିଁ । ଏଥିରେ ସେମାନେ ଖୁବ୍ ପାରିବାର । ଆମର ଗନ୍ଧ-ବାରିବା ଶକ୍ତି ଯେତେ, ତାଙ୍କର ଶକ୍ତି ତାର ପଚାଶ ଗୁଣ ବା ଶହେ ଗୁଣ । ତେଣୁ ଏତେ ଟିକିଏ ମାତ୍ରାର ମହକ ସେମାନେ ବାରିପାରନ୍ତି ଏବଂ ମହକରେ ଅତି ସାମାନ୍ୟ ପାର୍ଥକ୍ୟ ଥିଲେ ବି ସେମାନେ ଧରିପାରନ୍ତି । ଯେତେ ରକମ ମହକ ଅଛି, ସେଗୁଡ଼ିକୁ ଆମେ ସାଧାରଣତଃ ଠୁଳ ଭାବରେ ଚିହ୍ନୁ; କିନ୍ତୁ ମହୁ ସବୁ ଫୁଲର ମହକ



ଗୋଟି ଗୋଟି କରି ଥୟ କରିପାରେ । ମହୁକର ମୁହଁ ସାମନାରେ ଯେଉଁ ଦୁଇଟି ଶୁଣ୍ଢିକା ହଲର ହଲର ହେଉଥାଏ, ତାହା ଗଣ୍ଠିଗଣ୍ଠିକା । ସେହି ଶୁଣ୍ଢିକା ତାର ଘ୍ରାଣେନ୍ଦ୍ରିୟ ଏବଂ ତାରି ବାହାଦୁରପଣିଆ ଯୋଗୁଁ ମହୁକର 'ଏକ ଫୁଲ ବ୍ରତ'

ଉଡ଼ୁଡ଼ି ଯାଏ ନାହିଁ । ମହୁଙ୍କ ପିଠିପଟେ ଗୋଟିଏ ଛୋଟ ଖୋପ ଥାଏ । ସେହି ଖୋପରେ ଏକ ପ୍ରକାର ମହକ ଝରି ରହିଥାଏ । ମହୁଫେଣାରେ ୫୦ ବା ୭୫ ହଜାର ମହୁ ଥାଆନ୍ତି, କିନ୍ତୁ ସଭିଙ୍କ ମହକ ସମାନ । ଅନ୍ୟ ଗୋଟିଏ ଫେଣାରେ ମହୁଙ୍କ ମହକ ଫରକ । ତେଣୁ ଖାଦ୍ୟ ସଂଗ୍ରହ କରୁ କରୁ ଯଦି କୌଣସି ବାଉଳା ମହୁ ଆପଣା ଫେଣା ନପାଇ ପର ଫେଣାରେ ପହଞ୍ଚିଯାଏ, ତେବେ ତା କଥା ସରିଲା । ଫେଣାର ପାରଧିଆ କଟୁଆଳ ଥାଆନ୍ତି । ସେମାନେ ମହକ ବାରି ସଙ୍ଗେ ସଙ୍ଗେ ଜୀବନ ନିପାତ କରନ୍ତି ।

ମହୁକର ଦିଗ ଓ ଦୂରତା ଧାରଣା ଖୁବ୍ ପ୍ରଖର ବୋଲି କୁହାଯାଇଛି । ଏହା କିପରି ସେ ସାଧନ କରେ, ତାହା ଆମକୁ ଅଜଣା । ତେବେ ଫୁଲର ଠିକଣା ରାହା ଜାଣିବାପାଇଁ ସେହି ଜ୍ଞାନ ଲୋଡ଼ା । ସେହିପରି ଫୁଲରୁ ଫୁଲ ବାରିବା ପାଇଁ ରଙ୍ଗ ଓ ଗନ୍ଧ ଚିହ୍ନିବାରେ ସେମାନେ ଦକ୍ଷ । ଫୁଲ କାମ ପାଇଁ ଯେଉଁ ଗୁଣଗୁଡ଼ିକ ପ୍ରୟୋଜନ, ସେହିଗୁଡ଼ିକର ଚରମ ବିକାଶ ହୋଇଛି, ଅନ୍ୟ ଗୁଣ ବାଦ୍‌ପଡ଼ିଯାଇଛି । ଏଇ ପ୍ରସଙ୍ଗରେ ଶୁଣିବାଗୁଣ ବିଚାର କରାଯାଇପାରେ । ମହୁକର ସ୍ୱନ-ଶୁଣିବା ଶକ୍ତି ବଡ଼ ଦୁର୍ବଳ । ନିଜେ ଭିଆଉଥିବା ଏକତାନୀ ଗୁଞ୍ଜରଣ ସ୍ୱନ ବ୍ୟତୀତ ଅନ୍ୟ କିଛି ସ୍ୱନ ସେ ପ୍ରାୟ ଶୁଣିପାରେ ନାହିଁ ।

ଫୁଲ-ଗୁଣ ଘେନି ମହୁକ, ମହୁକ ମନଲାଖି ଫୁଲ । ଉପଯୋଜନ ଏକତରଫା ନୁହେଁ । ମହୁକର ରାଜି ମୁତାବକ ଫୁଲର ବେଶସଜା । ଫୁଲର ରୂପ ରଙ୍ଗ ଓ ଗନ୍ଧ ମହୁକକୁ ଫାନ୍ଦରେ ବାନ୍ଧିବା ପାଇଁ । ସେଇଥିପାଇଁ ଫୁଲର ବିଭବ । ଏଠାରେ କହିବା କଥା ଯେ, ଜୀବନର ଆରମ୍ଭ ଓ ବିକାଶଧାରା ଅନୁଶୀଳନ କଲେ ଜଣାଯାଏ ଯେ, ଜୀବସୃଷ୍ଟିର ମୂଳରୁ ଫୁଲ-ସର୍ଜନା ହୋଇ ନଥିଲା । ପତଙ୍ଗ ସୃଷ୍ଟି ପରେ ପ୍ରାୟ କୋଟିଏ ବର୍ଷ ଆଗେ ଧରଣୀକୋଳରେ ଫୁଲର ଆବିର୍ଭାବ ହୋଇଥିଲା । ସେହି ଅନାଦି ଅମଳରୁ ଫୁଲ ଓ ମହୁକ ବିବର୍ତ୍ତନ-ସୂତ୍ରରେ ଗୁନ୍ଥିହୋଇ କାଳ-କତୁରିକୁ ଜିଣି ଆସିଛନ୍ତି । କିନ୍ତୁ ୧୮ଶ ଶତାବ୍ଦୀ ଶେଷହେବା ବେଳକୁ ଜର୍ମାନୀ ଦେଶର ସ୍ପ୍ରେଙ୍ଗଲ୍ ନାମକ ଜଣେ ଧର୍ମଗୁରୁ ମହୁଙ୍କ ପରାଗଣ-ସମ୍ପାଦନ କଥା ସ୍ଥିର କରିବା ଆଗରୁ ଫୁଲ ଓ ମହୁଙ୍କ ସମ୍ପର୍କ ସମ୍ବନ୍ଧରେ ସଠିକ ଧାରଣା ଲୋକମାନଙ୍କର ନଥିଲା । 'ଭ୍ରମଟ ମଧୁପ' ଯୋଡ଼-ଶବ୍ଦରୁ ଏହା ସ୍ପଷ୍ଟ ଜଣାଯାଏ ।

ବୁଢ଼ୀମା' ଗପରେ ଏକକାଠି ପୁରର ସୁନ୍ଦରୀ କନିଆ ସଙ୍ଗେ ନାଗରବରର ମେଳ ହୁଏ ମାଲୁଣୀ ଯୋଗୁ । ମାଲୁଣୀ ପାଏ ଦୁଇ ତରଫରୁ ଭେଟି । ଠିକ୍ ସେହିପରି ମହୁକ ଫୁଲ-କନିଆ ସଙ୍ଗେ ପରାଗ ବରର ଯୋଡ଼ି ପକାଏ । ଘଟକଭାବେ

ତାଙ୍କୁ ମଧ ଦୁଇଆଡୁ ଉପହାର ମିଳେ । ବର ତରଫରୁ ମିଳେ ପରାଗ-ପଟଳ ଏବଂ କନିଆ ଆଡୁ ଫୁଲରସ । ମହୁକ ଫୁଲରୁ ପରାଗ ଲୁଟିକରେ ବୋଲି କହିବା ଠିକ୍ ନୁହେଁ । ଫୁଲରେ ପରାଗ ଥାଏ ଅନେକ ଅଧିକ । ସେଥିରୁ ଅତି ଊଣା ଅଂଶ ବାହା-ବେଦୀରେ ବସିବା ସୁଯୋଗ ପାଏ । ବାକୀ ସବୁ ମହୁକର ଆହାରଭାବେ କାମରେ ଲାଗେ । ଏଣେ କନିଆ ଗଡ଼—ଗରଭ ଚାରିପଟେ ରସଭାଣ୍ଡ ପୂରି ରହିଥାଏ । ସେହି ରସଭାଣ୍ଡରେ ଯେଉଁ ମିଠା ରସ ଥାଏ, ତାହା ଗର୍ଭାଧାନ ପରେ ଭ୍ରୂଣ ବଢ଼ିବା ପାଇଁ ପ୍ରଚୁର ଶକ୍ତି ତୁରିତରେ ଯୋଗାଇବାରେ ସାହାଯ୍ୟ କରେ । ସେଇଥିରୁ କିଛି ଅଂଶ ମହୁକ-ଶୂକ ପାଏ । ସବୁ ଫୁଲରୁ ମହୁକ ପରାଗ ଓ ରସ ପାଏ ନାହିଁ । ପପି, କଣ୍ଟାକୁସୁମ ଆଦି କେତେକ ଫୁଲରୁ ସେ ପାଏ କେବଳ ପରାଗ । ରଇଣ ବାସଙ୍ଗ ଆଦି କେତେକ ଫୁଲରୁ ମିଳେ କେବଳ ରସ । ତେବେ ପଦ୍ମ, ଗୋଲାପ ଆଦି ଅଧିକାଂଶ ଫୁଲରୁ ଉଭୟ ମିଳେ ।

ପରପରାଗଣ କାର୍ଯ୍ୟରେ ସାହାଯ୍ୟ କରିବାପାଇଁ ଫୁଲର ସାଜସଜା ମଧ ଚମତ୍କାର ହୋଇଥାଏ । ଫୁଲରେ ଗର୍ଭପୀଠ କେଶର ଗୁଚ୍ଛଠୁ ଅଲଗା ହୋଇଥାଏ । ରସଭାଣ୍ଡ



ଏପରିଭାବେ ଆଡୁଆଳରେ ଥାଏ ଯେ, ରସ ଶୋଷିଲାବେଳେ ମହୁକ କେଶର ଓ ଗର୍ଭପୀଠ ଉଭୟଙ୍କୁ ଭିନେ ଭିନେ ମୁହୂର୍ତ୍ତରେ ଦଳମର୍ଦ୍ଦନ କରିଥାଏ । କେତେ ଫୁଲରେ କେଶର ଓ ଗର୍ଭ ଆଗ ପଛ ହୋଇ ରମଣକ୍ଷମ ହୁଏ । ସେପରି ଫୁଲ କେତେଦିନଯାଏ ତାଜା ରହେ ଓ ଫୁଲରୁ ରସ ମିଳୁଥାଏ । ତେଣୁ ମହୁକ ସେପରି

ଫୁଲକୁ ଅନେକ ଥର ଭେଟିଥାଏ । କେତେକ ଫୁଲରେ ଯନ୍ତା—କାଳ ଖଞ୍ଜା ଯାଇଥାଏ । ମହୁକ ପ୍ରଥମେ ଗର୍ଭପୀଠ ଛୁଇଁ ଫୁଲ ଉପରେ ବସେ । ସେତେବେଳେ କେଶରର ପରାଗ-ପେଡ଼ି ପାଖୁଡ଼ା ଭିତରେ ଲୁଚି ରହିଥାଏ ଏବଂ କେଶରର ଗୋଟିଏ ଅଂଶ ଫୁଲର ରସ-ନଳୀ ମୁହଁ ଢ଼ାଙ୍କି ରହିଥାଏ । ଅନୁଭବରୁ ମହୁକ ସେକଥା ଜାଣେ । ସେ ମୁଣ୍ଡରେ ଠେଲି ଢ଼ାଙ୍କୁଣି ଖୋଲି ଭିତରକୁ ଯିବାବେଳେ କେଶର-ଦଣ୍ଡ ବଙ୍କେଇ ଯାଏ ଏବଂ ପରାଗ-ପେଡ଼ି ମହୁକ ପିଠିରେ ପିଟି ହୁଏ । ପରାଗରେଣୁ ଝରି ପଡ଼େ । ଫୁଲରେ ଏହିପ୍ରକାର ଶତ ଶତ କୌଶଳ ଦେଖିବାକୁ ମିଳେ ।



ମହୁକ ଫୁଲରେ ବାଟ ନ ଭୁଲି ମୋଡ଼ ଭାଙ୍ଗି ଯିବାର ବନ୍ଦୋବସ୍ତ ଥାଏ । ପ୍ରଥମେ ମହୁକ ଫୁଲ ପାଖୁଡ଼ା ଧଡ଼ିରେ ଓହ୍ଲାଇ ଥାଏ । ସେଇଠି ସେ ସଂକେତଚିହ୍ନ ଖୋଜେ ଓ ପାଏ । ପାଖୁଡ଼ା ଦେହରେ ଟିପା ଟିପା ହୋଇ ବା ଗାର ଗାର ହୋଇ ରଙ୍ଗ ଚିତା ବା ଚିତ୍ର-ପାଟି ଥାଏ । ସେଇ ଗୁଡ଼ିକ ନିଶାଣ ପରି ବାଟ ଦେଖାଏ । ଆମକୁ ମାଲୁମ ନ ହେଉଥିଲେ ମଧ ଫୁଲ ଭିତରେ ମହୁକର ସଂକେତମାନ ଥାଏ । ସେଇଥିରୁ ମହୁକ କାମରେ କେବେ ଭୁଲ ଭଟକା ହୁଏ ନାହିଁ ।

ଗୋଟିଏ ଫୁଲ ଅପେକ୍ଷା ପୁଞ୍ଜିଏ ଫୁଲର ମୋହିନୀ ଶକ୍ତି ଅଧିକ ହେବା ସ୍ୱାଭାବିକ । ତା'ବି ହୁଏ । ଗେଣ୍ଡୁଫୁଲ ବୋଲି ଯାହା ସାଧାରଣରେ ଚଳେ, ତାହା ପ୍ରକୃତରେ ଗୋଟିଏ ଫୁଲ ନୁହେଁ, ତାହା ଶତାଧିକ ଫୁଲରେ ସଜଡ଼ା ଗୋଟିଏ ଫୁଲ-ଗଭା । କିନ୍ତୁ ଫୁଲଗୁଡ଼ିକ ଏପରି ପାଞ୍ଚରେ ଖଞ୍ଜି ହୋଇଥାନ୍ତି ଯେ, ସମୁଦାୟ ଗଭାଟି ଗୋଟିଏ ଫୁଲ ପରି ମନେ ହୁଏ । ତୋର ମୋର ଭାବ ନ ରଖି ଦଶ କାମ ପାଇଁ ସମସ୍ତେ ମିଶି ଏକ ହୋଇ ଥାଆନ୍ତି । ତା' ଦ୍ୱାରା ମହୁକର ହୁଏ ସୁବିଧା ଏବଂ ଫୁଲରେ ମଧ ପରାଗଣ ହୁଏ ସୁଗମ ।

ମହୁଙ୍କ ଗୋଷ୍ଠୀଗତ ଜୀବନ ମଧ୍ୟ ଶିଖର-ଛୁଆଁ । ବଢ଼ିଆଳ ଫେଣାଟିରେ ଥାଏ ଗୋଟିଏମାତ୍ର ମା ବା ରାଣୀ । ଆଉ ସମସ୍ତେ ତାର ଛୁଆ । ଛୁଆଙ୍କ ଭିତରୁ ସମସ୍ତେ ପ୍ରାୟ ଚିରକୁମାରୀ ସେବିକା । ରମଣ ଋତୁରେ (ବସନ୍ତ, ଗ୍ରୀଷ୍ମ ଓ ଶରତ) କେତେ ଶହ ନାଗର ମହୁକ ପୋଷାଯାଇ ଥାନ୍ତି । ତେବେ ରାଣୀମା' ସର୍ବେସର୍ବା ନୁହେଁ । ତା ଆଦେଶରେ କାମ ହୁଏ ନାହିଁ । ବରଂ ସେବିକାମାନଙ୍କ ଇଚ୍ଛା ଅନୁସାରେ ଫେଣାର କାମ ଚାଲେ । ସେମାନେ ଯେତିକି ବେଗରେ ଘର ଗଢ଼ନ୍ତି, ରାଣୀ ସେହି ଅନୁପାତରେ ଡିମ୍ବ ଦିଏ । କୋଠ ଛକ୍ଷା ପରିମାଣ, ଫେଣାର ମହୁକସଂଖ୍ୟା ଓ ଆଗକୁ କେତେ ଫନ୍ଦା, ତାହା ବିଚାର କରି ସେବିକାମାନେ ଊଣା ଅଧିକ ଘର ଗଢ଼ନ୍ତି । ରାଣୀମା'ର କାମ କେବଳ ଡିମ୍ବ ଦେବା । ଚପାକାମ ବେଳେ ଦିନକ ଭିତରେ ହୁଏତ ତା ନିଜ ଓଜନର ଚାରିଗୁଣ ଓଜନର ଅଣ୍ଡା ପାରିବାକୁ ପଡ଼ିଥାଏ । ମହୁ ବା କେଶର ଖାଇ ହଜମ କରିବାକୁ ବି ତର ନଥାଏ ।



ତେଣୁ ସେବିକାମାନେ ରାଣୀକୁ ବରାବର ରାଣୀଭୋଗ ଗିଳାଉଥାନ୍ତି । ରାଣୀଭୋଗ ଦରଜୀର୍ଣ୍ଣ ଖାଦ୍ୟ । ତେଣୁ ଅଳ୍ପକେ ତାହା ରାଣୀମା'କୁ ଯଥେଷ୍ଟ ଶକ୍ତି ଓ ଗଢ଼ଣି-ଉପାଦାନ ଯୋଗାଇଥାଏ । ତେଣୁ ଫେଣା ବଢ଼ିବା ସେବିକାଙ୍କ କରଣି । ଫେଣା ବଢ଼ୁଁ ବଢ଼ୁଁ ଉଚ୍ଛୁରି ପଡ଼େ, ଆଉ ଅଧିକ ବଢ଼ିବା ସୁବିଧା ନୁହେଁ । ସେତିକିବେଳେ ସେବିକାମାନେ

ଦୁଇ ଦଳ ହୋଇ ଭଉଣୀ-ଭାଗ ହୋଉନ୍ତି । ଦଳେ ପୁରୁଣା ଫେଣାରେ ରହନ୍ତି । ଆଉ ଦଳକ ଚୋଟିଯାଏ ପେଟେ ପେଟେ ମହୁ ପିଇଦେଇ ରାଣୀକୁ ସାଙ୍ଗରେ ଉଡ଼େଇ ନେଇ ନୂଆ ଥାନକୁ ଚାଲି ଯାଆନ୍ତି ଓ ନୂଆ ଫେଣା ବାନ୍ଧନ୍ତି । ତା ଆଗରୁ ପୁରୁଣା ଫେଣାରେ ନୂଆ ରାଣୀ ଜନ୍ମଲାଭ କରିଥାଏ । ସେ ସେହି ପୁରୁଣା ଫେଣାରେ ରାଜୁତି କରେ ।

ନୂଆ ରାଣୀମା' ଜନ୍ମ ହେବା ଓ ଗାଦିରେ ବସିବା ମଧ ମଜା ଚରିତ । ଫେଣାର ସବୁ ସେବିକା ମାଈ । ରାଣୀ ବି ମାଈ । ତେବେ ତଫାତ୍ କେଉଁଠି ? ଖାଦ୍ୟଗୁଣ ଘେନି ମାଈ ମହୁକ ହୁଏ ଖଟୁଣୀ ବା ରାଣୀ । ମାଈ ଡ଼ିମ୍ବରୁ ଶୂକ ବାହାରିଲା ପରେ ସମସ୍ତଙ୍କୁ ପ୍ରଥମ ଦୁଇଦିନ ରାଣୀ ଭୋଗ ଅଧାର ମିଳେ । ତା'ପରେ ତିନିଦିନ କେଶର ଅଧାର ମିଳେ । ଡିମ୍ବରୁ ଶୂକ ବାହାରିବାର ଏଇ ପାଞ୍ଚ ଦିନ ପରେ ଗୋଟି ବାନ୍ଧେ ଏବଂ ପରେ ସେଥିରୁ ସେବିକାଟିଏ ବାହାରେ । କିନ୍ତୁ ଗୋଟି ବାନ୍ଧିବା ପର୍ଯ୍ୟନ୍ତ ସମୁଦାୟ ପାଞ୍ଚଦିନ ରାଣୀଭୋଗ ଖାଇବାକୁ ମିଳିଲେ ସେହି ମାଈ ମହୁକଟି ସେବିକା ନ ହୋଇ ହୁଏ ରାଣୀ । ରାଣୀ-ଭୋଗରେ ପ୍ରଚୁର ପରିମାଣରେ ମାଈ ଲିଙ୍ଗ ହରମୋନ୍ (ବିକାଶକ) ଥାଏ । ତେଣୁ ପ୍ରୟୋଜନବେଳେ ସେବିକାମାନେ ରାଣୀମା'ର ଅଜ୍ଞାତରେ ଦୋସରା ରାଣୀ ବଢ଼ାନ୍ତି । ଜବାନୀ 'ଜେମା' ମାଈ ମହୁକଟିର ଡେଣା ଶକ୍ତ ହେଲେ ସେ ଫେଣାରୁ ବାହାରି ବାହା-ଉଡ଼ା ଦିଏ । ନାଗରଗଣଙ୍କ ଅଭାବ ନାହିଁ । ତେଣୁ ଆକାଶରେ ଉଡୁଁ ଉଡୁଁ ଅଭିସାରିକା ଜେମା ସଙ୍ଗେ ନାଗର ଗୋଟିକର ଭେଟ ହୁଏ, ମେଳ ହୁଏ ଏବଂ ଯୋଡ଼ି ପଡ଼େ । ତାପରେ ରାସଲୀଳା ସାରି ନୂଆ ରାଣୀ ଫେରନ୍ତି ଫେଣାକୁ । ମହୁକରାଣୀ ମୂଳରେ କେବଳ ସେହି ଥରକ ରାଣୀ-ସୁଖ ପାଇଥାଏ । ତାରି ଫଳରେ ବି 'ରଜା' (ନାଗର-ମହୁକଟି) ମାଛିଟି ମରା ପଡ଼େ । ରମଣକାଳରେ ନାଗର ବର ଗର୍ବରେ ଫୁଲି ଫାଟିଯାଏ କି ରାଣୀମା' ନିଜ ସ୍ୱାମୀକି ହତ୍ୟାକରେ, ଠିକ୍ ଜଣାଯାଇନାହିଁ । ତେବେ ରମଣ ପରେ ରାଣୀ ଫେଣାକୁ ଫେରିବାବେଳେ ସ୍ୱାମୀ-ଶରୀରର ଅବଶେଷ ଶଙ୍କୁ ସ୍ୱରୂପ ଆଣିଥାଏ ଏବଂ ସେବିକାମାନଙ୍କ ଆଗରେ ଦେଖେଇ ଦେଖେଇ ଫୁଲେଇ ହୁଏ । ସେତେବେଳକୁ ପୁରୁଣା ରାଣୀ ଉଡ଼ି ଯାଇଥାଏ । ନହେଲେ ନୂଆ ରାଣୀ ତାକୁ ନାହୁଡ଼ ଫୋଡ଼ି ମାରିଦିଏ । ନୂଆରାଣୀ ଫେଣାରେ ଥିବା ଆଉ ସବୁ ବାଡୁଅ ଜେମା ଓ ରାଣୀ-ପୋକଙ୍କୁ ମଧ ଖୋଜି ଖୋଜି ନାହୁଡ଼ ବିନ୍ଧି ବଧ କରେ । ଅଲିଅଳି ସେ ଏବେ ଜୀବନସାରା ପ୍ରସବ-ବେଦନା ଭୋଗ କରେ । ରମଣର ଫଳ । ରମଣ ଋତୁ ଗଡ଼ିଗଲେ ଶ୍ରମିକା ମହୁକମାନେ ଅଳସୁଆ ଅଣ୍ଡିରା ନାଗରଗୁଡ଼ାକୁ ଗୋଟି ଗୋଟି ଧରି ଖୁଣ୍ କରନ୍ତି । ଆତ୍ମରକ୍ଷା ଓ ଆକ୍ରମଣ ପାଇଁ ଶ୍ରମିକା ମହୁକମାନଙ୍କର

ଯେପରି ନାହୁଡ଼ ଥାଏ, ନାଗରଙ୍କର ସେହି ଅସ୍ତ୍ରଚି ନଥାଏ । ପ୍ରକୃତିରେ ଅନାବଶ୍ୟକ ହତ୍ୟା ବାରଣ କରାଯାଇଛି । ରାଣୀ ଅକର୍ମଣ୍ୟ ହୋଇଗଲେ ବା ଫେଣା ଉତୁରିଲେ ନୂଆ ରାଣୀ ଗଢ଼ିବା ଦରକାର ପଡ଼େ । ତେବେ ଏ ସବୁ କଥାର ଶେଷନିଷ୍ପତ୍ତି ସେବିକାମାନଙ୍କର । ସେବିକାତନ୍ତ୍ର ଫେଣାର ଠୁଳ ଜୀବନକୁ ସୁଚାରୁ ଓ ସୁନୀତିରେ ଚଳାଏ । ଏଇ ନୀତି ସଙ୍ଗେ ଫୁଲର ସ୍ୱାର୍ଥ ବି ଜଡ଼ିତ ।

ମହୁକ କଥା ଭାବିଲାବେଳେ ମହୁ କଥାଟି ଆମକୁ ବାଇ କରେ । ମହୁକୁ ମର୍ତ୍ତ୍ୟମଣ୍ଡଳର ଅମୃତ ଆଖ୍ୟା ଦିଆଯାଇଛି । ସ୍ୱାଦ, ଗନ୍ଧ ଓ ଗୁଣ ବିଚାରରୁ ବେଦ-ଯୁଗରୁ ଏହାର ଖ୍ୟାତି ବଢ଼ି ଆସିଛି । ଏହା ଖୁବ୍ ଲଘୁପାକ ଖାଦ୍ୟ ଏବଂ ୫ ମିନିଟ୍‌ରେ ସଂପୂର୍ଣ୍ଣ ଜୀର୍ଣ୍ଣ ହୋଇଯାଏ । ଏଥିରେ କେତେକ ସତ୍ୱରକ (Enzyme) ମିଶିଥାଏ ଏବଂ ସେଗୁଡ଼ିକ ଆମ ଶରୀରର ଉପକାର କରନ୍ତି । ମହୁ ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ବଢ଼ାଏ । ଜଳ ସାମାନ୍ୟ ପରିମାଣରେ ଏବଂ ବିଭିନ୍ନ ପ୍ରକାର ଶର୍କରା ବହୁଳ ଭାଗରେ ଥିବାରୁ ମହୁରେ ଜୀବାଣୁମାନେ ବଢ଼ି ପାରନ୍ତି ନାହିଁ । ମହୁ ଅନେକ ଦିନ ଯାଏ ରହିଲେ ସୁଦ୍ଧା ସେଥିରେ କିଛି ଅବିଗୁଣ ଦେଖାଯାଏ ନାହିଁ । ମହୁକ ଯୋଗୁ ଆମେ ଅମୃତଭଳି ମହୁ ପାଉଁ ଅବଶ୍ୟ, ତେବେ ତା ଯୋଗେ ଆମର ବହୁ ବଡ଼ କାମ ସାଧିତ ହୁଏ । ଆମ କୃଷିର ସଫଳତା ମହୁକ ଉପରେ ଅନେକ ପରିମାଣରେ ନିର୍ଭର କରେ । ଫୁଲର ପରାଗଣ ବିନା ଫସଲ ଉତ୍ପନ୍ନ କରିବା କଳ୍ପନା ମିଛ । ସବୁ ମହୁକଙ୍କୁ ନଷ୍ଟ କରିଦେଲେ ଦୁନିଆ-ରୂପ କେତେ ଯେ ବଦଳି ଯିବ, ତାହା କଳ୍ପନା କରି ହେବନାହିଁ ।

ଫୁଲ ଓ ମହୁକ ଉଭୟ ବନ୍ଧାବନ୍ଧି । ମହୁକ ନଥିଲେ ଫୁଲଗଛ ନାହିଁ କି ଫୁଲ ନଥିଲେ ମହୁକ ନାହିଁ । ମହୁକ ଫୁଲରୁ ପାଏ ଉଚ୍ଚାଟ, ଆମୋଦ ଓ ଆନନ୍ଦ । ଫୁଲ ମହୁକ ଯୋଗୁଁ ପାଏ ରମଣ । ଦୁହେଁ ଦୁହିଁଙ୍କର ହିତ, ଲେଶମାତ୍ର ବିରୋଧ ନାହିଁ । ଉଦ୍ଭିଦ ଓ ପ୍ରାଣୀଙ୍କ ଭିତରେ ପ୍ରଧାନତଃ ଖାଦ୍ୟ ଓ ଖାଦକ ସମ୍ପର୍କ ଥାଏ । ଉଦ୍ଭିଦ ଖାଦ୍ୟ ତିଆରି କରେ, ପ୍ରାଣୀମାନେ ସେହି ଖାଦ୍ୟ ଖାଇ ବଢ଼ନ୍ତି । କିନ୍ତୁ ଫୁଲ ଓ ମହୁକର ସମ୍ପର୍କ ଅନ୍ୟ ଏକ ସ୍ତରର—ଅତି ଅନ୍ତରଙ୍ଗ । ଫୁଲର ସୋହାଗ ମହୁକର ସୌନ୍ଦର୍ଯ୍ୟାନୁରାଗ ସଙ୍ଗେ ଏବଂ ଫୁଲର କାମୁକତା ମହୁକର କ୍ଷୁଧା ସଙ୍ଗେ ଛନ୍ଦା । ଏଇ ମହତ ସମ୍ପର୍କର ପରିସର ବଢ଼ିବା ଉଚିତ । ଫୁଲଗଛ ଲଗେଇ ଓ ମହୁଚାଷ ବଢ଼େଇ ଏହା ଆମେ କରି ପାରିବା । ସେଥିରେ ମଧ୍ୟ ଆମର ବହୁତ ଉପକାର, ଅଧିକ ଫୁଲଫଳ ମିଳିବ, ଅଧିକ ମହୁ ମିଳିବ । ଆଉ ମିଳିବ ଅଧିକ ସୌନ୍ଦର୍ଯ୍ୟ ।

# ମଧୁ ଉଛୁଳା ବେଳ

ଫଗୁଣ ମାସ । ବସନ୍ତ ଋତୁ । ସବୁଆଡ଼େ ଓ ସବୁଠି ନୂଆ ନୂଆ ଭାବ । ଗଛ ଲତାରେ ନୂଆ ମୁକୁଳ ଓ ଫୁଲ । ଗଛ ଡାଳରେ ହଳଦୀବସନ୍ତର ମନୋହାରୀ ଡାକ । ସେତେବେଳେ ମଧୁ-ଉଛୁଳା ବେଳ । ଫୁଲରେ ଫୁଲରେ ମଧୁରସ ଭରି ରହିଛି । ମହୁକମାନଙ୍କ ପାଇଁ ସୌଭାଗ୍ୟର କାଳ । ଅନେକ ଫୁଲ ଗଛ ମଧ୍ୟରେ ଏହି ସମୟରେ ଫୁଲରେ ଭରିଯାଏ ସୁନାରୀ ଓ ବଉଳକୋଳି ।

ସେହିପରି ଶରତ ଓ ହେମନ୍ତ ଋତୁରେ ପାହାଡ଼ିଆ କୃଷି କ୍ଷେତମାନଙ୍କରେ ବୁଣାଯାଇ ଥିବା ରାଶି ଫସଲ ସୁନା ରଙ୍ଗୀ ଫୁଲରେ ଭରିଯାଏ । ସମୁଦାୟ କ୍ଷେତ ସୁନା ରଙ୍ଗର ଗାଲିଚା ପରି ଦୂରରୁ ଦେଖାଯାଏ । ଚମତ୍କାର ଦୃଶ୍ୟ । ଆମ ଦୁଇ ଆଖିକୁ ଯାହା ଏତେ ଦୂରରୁ ଏଡ଼େ ମନୋରମ ଦେଖାଯାଏ, ତାହା ହଜାର ହଜାର ଆଖି ଥିବା ମହୁକ ମନକୁ, — ଭରପୂର ଶୋଭା-ପସରା ମନକୁ ଯେ କିପରି ଉଛନ୍ନ କରୁଥିବ ତାହା ବର୍ଣ୍ଣନା କରିବା କଠିନ । ତେବେ ସେହି କ୍ଷେତର ସବୁ ଗଛରେ ଫୁଲ ଖେଳିବା ପର୍ଯ୍ୟନ୍ତ ମହୁକ ଅପେକ୍ଷା କରେ ନାହିଁ । ପ୍ରାୟ ପ୍ରଥମରୁ, ଯେତେବେଳେ ଗୋଟିଏ ଗଛରେ ପେଣ୍ଡାଏ ଫୁଲ ଫୁଟେ, ସେତେବେଳୁଁ ଆନମନା ହେଇ ଉଡ଼ୁଁ ଉଡ଼ୁଁ କୌଣସି ମଧୁ ସଂଗ୍ରାହକ ଶ୍ରମିକ ସେହି ବିନ୍ଦୁକୁ ଟାଣି ହୋଇଯାଏ । ସିଏ ପେଟ ପୂରେଇ ମଧୁ ପିଇ, କ୍ଷେତର ଦିଗ ଓ ଦୂରତା କଳନା କରି ମହଲକୁ ଫେରି ଆସେ । ଅନ୍ୟାନ୍ୟ ମଧୁ-ସଂଗ୍ରାହକମାନଙ୍କୁ ଟିକିଏ ଟିକିଏ ଚଖେଇ ଦେଇ ମଧୁ ସାଇତାବାଲୀ ମହୁକକୁ ସମର୍ପି ଦିଏ । ସେଇଠୁଁ ସେ ଫେଣା ଉପରେ ନାଚ ଗୀତ ମାଧ୍ୟମରେ ନୂଆ ଫୁଲସ୍ଥାନର ଦୂରତା ଓ ଦିଗ ଜଣେଇ ଦିଏ ।

ଏବେ ଗୋଟିଏ ପରେ ଦୁଇ, ଚାରି ହେଇ ଅନେକ ମଧୁ-ସଂଗ୍ରାହକ ସେଇ ରାଶି-କ୍ଷେତ ଆଡ଼େ ଉଡ଼ି ଯାଆନ୍ତି । କ୍ରମେ କ୍ରମେ ଫୁଲ ଅଧିକରୁ ଅଧିକ ଫୁଟେ । ସମସ୍ତେ ମଧୁ ପେଟେ ପେଟେ ପିଇ ଫେରନ୍ତି । ଗୋଟିଏ ମହୁକକୁ ପେଟ ପୂରିବା ପାଇଁ ପ୍ରାୟ ଶହେ ଫୁଲରୁ ମଧୁ ଶୋଷିବାକୁ ହୋଇଥାଏ । ସେତିକି ମଧୁ'ର ପରିମାଣ ହେଉଛି ଗୋଟିଏ ଟୋପାର ଏକତୃତୀୟାଂଶ । ମଧୁରେ ଶତକଡ଼ା ୬୦ ରୁ ୮୦ ଭାଗ ପାଣି ଥାଏ । କେତେ ପାଣି ଶୁଖିଲେ ମଧୁ ମହୁ ହେବ, ତାହା ମହୁକ ଜାଣେ । ତାହା ମଧୁ'ର ପାଞ୍ଚ ଭାଗରୁ ୩ ଭାଗ ବା ଚାରି ଭାଗ । ହାରାହାରି ଚାରି ଶହ ଫୁଲରୁ ମଧୁ ଆଣିଲେ ଟୋପାଏ ମହୁ ହୁଏ । ମାତ୍ର ଗୋଟିଏ କିଲୋ ମହୁ ପାଇଁ କେତେ ଫୁଲ ଯେ ଲୋଡ଼ା, ତାହା ଗଣନା କଲେ ଆମକୁ ଆଚମ୍ବିତ ହେବାକୁ ପଡ଼େ । ମହୁକର ସଂଖ୍ୟା ପ୍ରତି ଡର ନାହିଁ । ସେମାନେ

ମିଶି କେତେ କିଲୋ ମହୁ ଗଠନ କରନ୍ତି, ନିଜେ ଖାଆନ୍ତି, ଅନ୍ୟ ପିଲାମାନଙ୍କୁ ଖୁଆନ୍ତି ଓ ଫେଣାରେ ଜମେଇ ରଖନ୍ତି ଭବିଷ୍ୟତ ପାଇଁ । ଅଳ୍ପ ଅଳ୍ପ କରି ବିଶାଳ ମହୁ ଭାଣ୍ଡ ମହୁକ ବଢ଼ାଏ । ଧନ୍ୟ ତାର ଶ୍ରମ, ଧନ୍ୟ ତା'ର ବାହାଦୁରି !

## ମହୁମହଲରେ ଯୁଦ୍ଧ

ମହୁମହଲ ମଧୁ ଉଛୁଳୁଥିବା କାଳରେ, ହେମନ୍ତ ଋତୁରେ, ଗୋଟିଏ କଳା ବଲ୍ଲୁରି ଦିନେ ସେହି ମହଲ ଆଗରେ ଆକାଶରେ ଢକଢକ୍ ହେବାକୁ ଲାଗିଲା । ତୁରନ୍ତ ତାହା ଦ୍ୱାରପାଳମାନଙ୍କ ଦୃଷ୍ଟିରେ ପଡ଼ିଲା । ତତ୍କ୍ଷଣାତ୍ ସେମାନେ ତା' ଆଡ଼କୁ ଉଡ଼ିଗଲେ । ବଲ୍ଲୁରିଟି ମଧ ତରକା, ସେ ବେଶୀ ବେଗରେ ଉଡ଼ି ଖସି ଗଲା । ଦ୍ୱାରପାଳମାନେ ନିଜ ସ୍ଥାନକୁ ଓହ୍ଲେଇ ଆସି ବସିଲେ; ମାତ୍ର ନିଜ ଭାଷାରେ ଅନ୍ୟ କଟୁଆଳମାନଙ୍କୁ ସଙ୍କେତ ଦେଇଦେଲେ ଯେ ବିପଦ ଆସନ୍ନ । ଆଶଙ୍କା ଶୀଘ୍ର ସତ ହେଲା । ବଲ୍ଲୁରିଟି ପୁଣି ଫେରି ଆସିଲା । କଟୁଆଳମାନେ ବି ସତର୍କ ଥିଲେ । ମହୁ ମହଲ ଦ୍ୱାର ମୁହଁରେ ବଲ୍ଲୁରୀଟି ଓହ୍ଲେଇବା ଆଗରୁ କଟୁଆଳମାନେ ତାକୁ ଘେରିଗଲେ । ମୁଣ୍ଡ ଗଣ୍ଡି ଅଲଗା ଅଲଗା କରିଦେଲେ, ପଖିଗୁଡ଼ିକୁ ମଧ ଖଣ୍ଡ ଖଣ୍ଡ କରିଦେଲେ । ଅତି ଆଗ୍ରହରେ ବୀର ଦର୍ପରେ କଟୁଆଳମାନେ ଖଣ୍ଡ-ବିଖଣ୍ଡିତ ବଲ୍ଲୁରି-ଶରୀରର ଟୁକୁରାଗୁଡ଼ିକୁ ବୋହିଆଣି ଦ୍ୱାର ସାମନାରେ ସଜାଡ଼ି ରଖିଲେ । ଉଦ୍ଦେଶ୍ୟ ହେଲା – ଲୁଣ୍ଠନକାରୀ ସଭିଙ୍କୁ ସାବଧାନ କରେଇଦେବା ।

ହେଲେ ବିପଦ ଆଶଙ୍କା ଦୂର ହେଲା ନାହିଁ । ସେହିଦିନ ସଞ୍ଜରେ ଗୋଟିଏ କଟୁଆଳ ମହଲ ଉପରେ ଶାଳଗଛ ଡାଳରେ ଆଉ ଏକ ଶତ୍ରୁପକ୍ଷ ବଲ୍ଲୁରୀକୁ ଦେଖି ପାରିଥିଲା; କିନ୍ତୁ ସେ ନିରାପଦରେ ଖସି ଯାଇଥିଲା । ତା'ପର ଦିନ ଉଛୁର ସକାଳେ, ଯେତେବେଳେ ଅଧିକାଂଶ ମହୁକ ମଧୁ ସଂଗ୍ରହ ପାଇଁ ବାହାରକୁ ଯାଇଛନ୍ତି ଓ ଅନ୍ୟମାନେ ନିଜ ନିଜ କାମରେ ଲାଗିପଡ଼ିଛନ୍ତି, ସେତେବେଳେ ତିନୋଟି ବଡ଼ ବଡ଼ ଭୟଙ୍କର ବଲ୍ଲୁରି ମହୁମହଲ ପାଖେ ପହୁଞ୍ଚିଗଲେ । ସେମାନଙ୍କର କାହାକୁ ଖାତିର ନାହିଁ କି ଭୟ ନାହିଁ । ଦଳି ମକଚି ସେମାନେ ମହଲ ଭିତରକୁ ପଶିବାକୁ ଚେଷ୍ଟା କଲେ । ଗୋଟିକ ଦେହରେ ଦ୍ୱାରପାଳ ନିଜ ପୁଚ୍ଛରେ ଥିବା ବିଷାକ୍ତ ବର୍ଚ୍ଛା ପୂରେଇ ଦେଇ ମାରିଦେଲା । ଦୁଇଟି ବଲ୍ଲୁରି ଭିତରେ ପଶି, ପିଲାମହୁକଙ୍କୁ ଚମକେଇ ମହୁଭଣ୍ଡାର ଥିବା ଫେଣା ପାଖରେ ପହୁଞ୍ଚିଗଲେ ଓ ପେଟ ପୂରେଇ ମହୁ ପିଇଦେଇ ବାହାରିଲେ । ସେତେବେଳକୁ କଟୁଆଳମାନେ ଏକଜୁଟ ହୋଇ ଦ୍ୱାର ଜଗିଛନ୍ତି । ତାକୁ ଏଡ଼େଇ ବା ଡେଇଁ ବାହାରକୁ ଆସିବାକୁ ହେବ । ତଥାପି ମହୁ ପିଇଥିବା ବଲ୍ଲୁରି ଦୁଇଟିରୁ ଆଉ ଗୋଟିଏ ବର୍ଚ୍ଛା-ମାଡ଼ ଖାଇ ଟଳି ପଡ଼ିଲା । ଶେଷରେ

ଗୋଟିଏ ଖସି ପଳେଇଗଲା । ଗୋଟିଏ ଗଲେ ବି ମହାବିପଦ ।

ମହୁ-ମହଲ ମଧ୍ୟରେ ଯୁଦ୍ଧ-ଘୋଷଣା ହୋଇଗଲା । ସମୁଦାୟ ମହଲରେ ହୁଲସ୍ଥୁଲ ପଡ଼ିଗଲା । କେବଳ ଶୂକ ଓ ରାଣୀଙ୍କୁ ଖୁଆଇବା ବ୍ୟତୀତ ଆଉ ସବୁ କାମ ବନ୍ଦ ହୋଇଗଲା । ରାଣୀଙ୍କୁ ମଧ୍ୟ ଖଣ୍ଟୁଆଡି ଖବର ଦିଆଗଲା । ରାଣୀ ବି ଉଦ୍‌ବିଗ୍ନ ହେଲେ । ତାଙ୍କ ପାଖରେ ବଛା ବଛା ରକ୍ଷାକାରୀ କଟୁଆଳ ଥାଆନ୍ତି । ସେମାନଙ୍କୁ ରାଣୀ ସତର୍କ ରହିବାକୁ ବରାଦ ଦେଲେ । ଗୋଟିଏ ଫେରି ଯାଇଛି; ସେ ଅନ୍ୟ ଲୁଣ୍ଠନକାରୀଙ୍କୁ ନିଶ୍ଚୟ ଡାକି ଆଣିବ । ତେବେ ଆଶା ଯେ, ତିନୋଟିରୁ ଦୁଇଟି ଆକ୍ରମଣକାରୀ ମରିଯାଇଛନ୍ତି । ଜାଗତିଆର ରହିଲେ ହେଲା । ସେହି ଅବସ୍ଥାରେ ସଭିଏଁ ପ୍ରସ୍ତୁତ ହୋଇ ରହିଲେ ।



ପାରିବାର ଖଣ୍ଡ ବଲୁରିଟି ପ୍ରାୟ ତିନି ପା କିଲୋମିଟର (୭୫୦ ମିଟର) ଦୂର ଉଡ଼ିଯାଇ ତା' ମହଲରେ ପହଞ୍ଚିଲା । ମହଲ ବୋଲି ତାର ଗୋଟିଏ ପତଳା ଥାଳିଆ ଆକାରର ବସା । ସେଇଥିରେ ତାଙ୍କ ପିଲାଙ୍କ ଜନ୍ମ ଓ ବଢ଼ୁତି । ସେଠି ଶହେଖଣ୍ଡେ ବଲୁରି ଏକାଠି ଥା'ନ୍ତି । ସେମାନେ ଇସରା ପାଇ ସଙ୍ଗେ ସଙ୍ଗେ ପ୍ରବଳ ଭାବୋଲ୍ଲାସରେ ଉଡ଼ି ଆସିଲେ । ଯୁଦ୍ଧ କାଳରେ ଯେପରି ଗୋଟିଏ ଉଡ଼ାଜାହଜ-ଘାଟିରୁ ଏକକାଳୀନ ଶହେ ଉଡ଼ାଜାହଜ ଉଡ଼ି ଯାଆନ୍ତି, ସେହିପରି । ଉଡ଼ିଲାବେଳେ ପେଟ ଦୋହଲେଇ ଓ ପକ୍ଷ ପିଟି ଟାଏଁ ଟାଏଁ ଶବ୍ଦ କରି ଉଡ଼ିଲେ । ପ୍ରକୃତରେ ଉଡ଼ିଲାବେଳେ ବି ରଣ-ନୃତ୍ୟ କରୁଥିଲେ ।

ପ୍ରଥମେ ସେମାନେ ଆଗରୁ ସନ୍ଧାନ କରିଥିବା ଏକ ଦୁର୍ବଳ ନୂତନ ମହୁ-ମହଲ ଆକ୍ରମଣ କଲେ । ସେଠି ପ୍ରତିରୋଧ ବୋଲି କିଛି ନ ଥିଲା । ଅକ୍ଳେଶରେ ବଲୁରିମାନେ

ନୂଆ ମହୁମହଲକୁ ଅଧିକାର କଲେ । ଯୁଦ୍ଧ ନୁହେଁ, ନୃଶଂସ ନାରକୀୟ ଗଣହତ୍ୟା କିଛି ସମୟ ଲାଗିରହିଲା । ମାତ୍ର ହଠାତ୍ କୌଣସି ସଙ୍କେତ କାରଣରୁ ଗଣହତ୍ୟା ବନ୍ଦ କରିଦେଇ ବଲୁରିମାନେ ନୂଆ ମହୁକମାନଙ୍କୁ ପମ୍ପୁଲେଇଲେ । ଯେଉଁମାନେ ହତ୍ୟାରୁ ବର୍ତ୍ତି ଯାଇଥିଲେ, ସେମାନେ ପାଗଳଙ୍କ ପରି ନାଚି କୁଦି ନିଜ ମହଲାର ମହୁଭାଣ୍ଡ ବିଜୟୀ ବୀର ବଲୁରିଙ୍କ ସହିତ ଲୁଣ୍ଠନ କରି ପେଟେ ପେଟେ ପିଇଗଲେ ।



କେଇ ମିନିଟ୍ ସମୟ ପରେ ବଲୁରିମାନେ ଓ ଲୁଣ୍ଠିତ ମହୁକମାନେ ଏକତ୍ର ମିଶି ଉଡ଼ିଲେ ଓ ପୂର୍ବୋକ୍ତ ମହୁ ମହଲ ଆଗରେ ଓହ୍ଲେଇଲେ । ତାଙ୍କ ଆଗରେ ଶକ୍ତ ପ୍ରତିରୋଧ । ଧାଡ଼ି ଧାଡ଼ି ରଣ-ସଜ୍ଜାରେ କଟୁଆଳମାନେ ଉପସ୍ଥିତ । ତଥାପି ସେମାନଙ୍କୁ ପଛକୁ ପଛକୁ ଠେଲିଦେଇ ଆକ୍ରମଣକାରୀମାନେ ଆଗେଇ ଭିତରେ ପଶିଗଲେ । ଯୁଦ୍ଧରେ ଅନେକ ମରିଗଲେ । ମହୁ-ମହଲର ଚଟାଣ ଉପରେ ପ୍ରାୟ ଏକାଧିକ

ସେଣ୍ଟିମିଟର ବହଳରେ ମୃତ ଓ ଆହତ ମହୁକ ଓ ବଲୁରି ପଡ଼ିଗଲେ । ହେଲେ ଶେଷ ଅବରୋଧକାରୀ ଶକ୍ତିକୁ ପରାହତ କରିବା ସମ୍ଭବ ହେଲାନାହିଁ । ଆକ୍ରମଣକାରୀମାନେ ଉଣ୍ଡି ଉଣ୍ଡି ମହୁଭାଣ୍ଡ ପାଖେ ପହଞ୍ଚି ମନଇଚ୍ଛା ମହୁ ପିଇଗଲେ । ସେହି ମହୁଆଳୀ ଭାରାରେ ଆକ୍ରମଣକାରୀଙ୍କ ଶରୀର ମାନ୍ଦା ହେଇଗଲା । ଫେରସ୍ତ ଆକ୍ରମଣରେ କେତେକଙ୍କ ଗୋଡ଼ ଭାଙ୍ଗିଲା, ପକ୍ଷ ଛିଡ଼ିଲା ଓ କେତେ ନାହୁଡ଼-ବର୍ଚ୍ଛାଘାତ ପାଇ ମରିପଡ଼ିଲେ । ପଛକୁ ଫେରି ପଳେଇ ଯିବାପାଇଁ ପ୍ରୟାସ କରୁଁ କରୁଁ ନୂଆ ବିପଦ ଦାଉରେ ପଡ଼ିଲେ ।

ପଛଉ ପଛଉ ସୁରକ୍ଷିତ ଅନ୍ଦର ମହଲର ରାଣୀହଂସପୁରଠି କେହି ଆକ୍ରମଣକାରୀ ଅଜାଣତରେ ହାବୁଡ଼ିଗଲା । ତେଣୁ ସର୍ବାଧିକ ବଳବାନ କଟୁଆଳମାନେ ଉତ୍ତେଜିତ ହୋଇ ପୁନଃ ପ୍ରତିଆକ୍ରମଣ କଲେ । ଆଗ, ପଛ, କଡ଼, କେଉଁଆଡ଼େ ଆଉ ବାଟ ନାହିଁ । ଗୋଟି ଗୋଟି ହୋଇ ସବୁ ଆକ୍ରମଣକାରୀ ମଲେ । ଯେସାକୁ ତେସା ମାମଲା । ସେମାନେ ଯେଉଁ ରକ୍ତ-ପିପାସା ନେଇ ଅଭିଯାନ ଆରମ୍ଭ କରିଥିଲେ, ସେମାନେ ସେହି ରକ୍ତ-ପିପାସାର ଶିକାର ହେଲେ । ଦୁଇ ଘଣ୍ଟା ଭିତରେ ଏକ ମହାସମରର ସମାପ୍ତି ହେଲା । ସୁନେଲୀ ମହୁମହଲର ପୂର୍ଣ୍ଣ ବିଜୟ ପ୍ରତିଷ୍ଠିତ ହେଲା । ତଥାପି ସେହି ମହଲରୁ ଅଧା ଅଧି ଅଧିବାସୀ ପ୍ରତିରକ୍ଷା-ଯଜ୍ଞରେ ଆତ୍ମାହୁତି ଅଯାଚିତ ଭାବରେ ଦେଇଦେଲେ ।

ମହୁମହଲ ଉପରେ ଏଇ ଏକୁଟିଆ ଆକ୍ରମଣ ନୁହେଁ । ଅନ୍ୟପ୍ରକାର ଆକ୍ରମଣ ହୁଏ । ସେଥିରେ ଭିନ୍ନ ପ୍ରକାର ପ୍ରତିରକ୍ଷା-ପଦ୍ଧତି ଗ୍ରହଣ କରାଯାଏ । ସେହିପରି ଏକ ହାସ୍ୟୋଦ୍ଦୀପକ ଯୁଦ୍ଧ ବିବରଣୀ ବିଚାର କରିବା । ଏଥିରେ ଆକ୍ରାମକ ହେଉଛନ୍ତି ପିମ୍ପୁଡ଼ି । ଗୋଟିଏ ସଞ୍ଜବେଳଟାରେ ଖଣ୍ଡମାନେ ମହୁମହଲ ଆକ୍ରମଣ କଲେ । ସେମାନେ ଥିଲେ କ୍ଷୁଦ୍ରକାୟ ପିମ୍ପୁଡ଼ି । ଧାଡ଼ି ଧରି ମହଲ ସାମନାରେ ଯୋଦ୍ଧାବାହିନୀ ପରି ଆସି ପହଞ୍ଚିଗଲେ । ସେମାନେ ମିଠାପ୍ରିୟ ଓ ମହୁ ଚୋରି କରିବାକୁ ଆସିଛନ୍ତି । କଟୁଆଳମାନେ ସେମାନଙ୍କୁ 'ଧର ଧର' ରଡ଼ିକରି ଓଗାଳିଲେ, ତାଙ୍କ ଉପରକୁ ନାହୁଡ଼ ପିଟି ତାଙ୍କୁ ମାରିବାକୁ ବ୍ୟସ୍ତ ହେଲେ । କିନ୍ତୁ ସେଥିରେ ପିମ୍ପୁଡ଼ିଧାଡ଼ି ଭାଙ୍ଗିଲା ନାହିଁ । ତାଙ୍କ ଧାଡ଼ିର ଶେଷ ନାହିଁ । ମହଲରେ ବିଭିନ୍ନ କାମ କରୁଥିବା ମହୁକମାନେ ଯୋଦ୍ଧା କଟୁଆଳମାନଙ୍କ କୁହାଟ ଶୁଣିଲେ ଓ ଦ୍ୱାରମୁହଁକୁ ଦଉଡ଼ିଲେ । ଶୀଘ୍ର ମହଲଦ୍ୱାର ରୁଦ୍ଧ ଏବଂ ବିପଦ-ପ୍ରଚାରକ ମହୁକମାନଙ୍କ ଭିତରେ ରୁଦ୍ଧ ହୋଇଗଲା । ସେଇ ଭିଡ଼ ଭିତରେ ପିମ୍ପୁଡ଼ି ପଶିଯାଇ ମହୁକଙ୍କ ଗୋଡ଼କୁ ପେଟକୁ କାମୁଡ଼ି ପକେଇଲେ । ବିପଦ ସାଙ୍ଗକୁ ବେଦନା ମିଶିଗଲା । ମହୁକମାନଙ୍କ ନାହୁଡ଼ ମଧ ପିମ୍ପୁଡ଼ିଙ୍କ ଛୋଟ ଦେହରେ ପଶିଲା ନାହିଁ । ମହୁକ ମୁଣ୍ଡରେ ନୂଆ ବୁଦ୍ଧି ଉଦୟ ହେଲା । ସେମାନେ

ପିମ୍ପୁଡ଼ିଙ୍କୁ କାମୁଡ଼ି ଧରି ଉଡ଼ିଲେ ଓ ନିକଟସ୍ଥ ଏକ ଘାସ ବୁଦା ଉପରେ ଛାଡ଼ି ଦେଲେ । କିଛି ସମୟ ଲାଗିଲା, ଅଥଚ ମହୁଙ୍କର ଜିତାପଟ ହେଲା । ଠିକ୍ ଏହିପରି ପୋଲିସ୍‌ବାଲାଏ ବିଧାନସଭା ସମ୍ମୁଖରେ ଗଣ୍ଡଗୋଳ କରୁଥିବା ପିଲାମାନଙ୍କୁ ଗାଡ଼ିରେ ଟେକିନେଇ ଚନ୍ଦକା ଜଙ୍ଗଲ ଭିତରେ ଛାଡ଼ି ଦେଇ ଆସନ୍ତି ।



ଶେଷରେ ମୂଷା ଆକ୍ରମଣ କଥା ବିଚାର କରି ପ୍ରସଙ୍ଗଟି ଶେଷ କରିବା । ପ୍ରସଙ୍ଗଟିରେ ଲୋଭ-ମୋହ-ମୃତ୍ୟୁ ସମ୍ପର୍କିତ କଥାଟି ପ୍ରକାଶ ପାଏ । ପ୍ରଚଣ୍ଡ ଶୀତଦିନ କଥା । ସମସ୍ତେ ନିଜ ନିଜ ବାସସ୍ଥାନରେ ଜାକି ଜୁକି ହେଇ ଉଷୁମ ଟାଣୁଛନ୍ତି । ସବୁଆଡ଼ ପ୍ରାୟ ନୀରବ ନିଶ୍ଚଳ । ହଠାତ୍ ପୂବେଇ ମେଘ ଉଠେଇ ବର୍ଷା କୁଢ଼େଇଦେଲା । ବର୍ଷାପାଣିରେ ମୂଷାଗାତ ପୂରିଗଲା । ମୂଷାକୁ ଗାତ ଛାଡ଼ି ନୂଆ ଆଶ୍ରୟସ୍ଥାନ ଖୋଜିବାକୁ ପଡ଼ିଲା । ସେ ଖୋଜାଖୋଜି କରୁଁ କରୁଁ ମହୁମହଲ ଦ୍ୱାରରେ ପହଞ୍ଚିଗଲା । ଦ୍ୱାରବାଟେ ଉଷୁମ ତାତି, ମନମତାଣିଆ ବାସନା ଓ ସୁନ୍ଦର ଗୁଞ୍ଜରଣ ବାହାରକୁ ଆସୁଛି । ଭିତରକୁ ପ୍ରବେଶ କରିବାକୁ ସେ ଚେଷ୍ଟା କଲା, ହେଲେ ବାଟମୁହଁଟି ଛୋଟ । ମୁହଁଟିରେ ମହଣ ବାନ୍ଧେଣୀ ଦେଇ ମସୃଣ ଓ ଶକ୍ତ କରାଯାଇଥାଏ । କେତେକ ଗଛରୁ ବାହାରୁଥିବା ଅଠାଗୁଡ଼ିକ ସହିତ କିଛି ମହଣ ମିଶାଇ ମହୁକ ବାନ୍ଧେଣୀ

ବନେଇଥାଏ । ଅଠାଗଛ ଗୁଡ଼ିକ ହେଲା ଡ଼ାଉର, ଅମଡା, କପାସିଆ, ଝିଙ୍ଗଣ, ବିଜ୍ଜା, ଶାଳ ଏବଂ ଉଦଳ । ତେଣୁ ଦୁଆର ମୁହଁର ଲେପକୁ ମୂଷା ଦାକୁଆ ଦାନ୍ତରେ କାଟିଦେବା ସହଜ । ମୂଷା ଦ୍ୱାରଟିକୁ ଟିକିଏ ବଡ଼ କରିଦେଇ ଭିତରେ ପ୍ରବେଶ କଲା । ମୂଷାକୁ ଦେଖି ମହୁକମାନେ ଟିକିଏ ପଛକୁ ଘୁଞ୍ଚିଗଲେ । ମୂଳରୁ ବର୍ଷାଯୋଗୁଁ ଦ୍ୱାରପାଳମାନେ ମହଲ ଭିତରକୁ ପଶି ଯାଇଥିଲେ । ମୂଷା ବୁଝିଲା, ଥାନଟି ନିରାପଦ ଓ ଖାଦ୍ୟ ଭରା । ଅଧିକ କାଳ ଅପେକ୍ଷା ନ କରି ତରତର ହୋଇ ବାହାରି ଗଲା ।

ମୂଷାଟି ପୁଣି ଗଲା କୁଆଡ଼େ ? ସେ ତାର ଗାତ ପାଖକୁ ଫେରିଯାଇ ସେଠି ଅପେକ୍ଷା କରିଥିବା ତାର ନିଜର ଯୁବତୀ ମାଈମୂଷାଟିକୁ ସଙ୍ଗରେ ଧରି ପୁଣି ଫେରିଆସିଲା । ନିଜେ ମହୁମହଲ ଭିତରେ ପଶି ସାଙ୍କେତିକ ଭାଷାରେ ଚହଟ କଥା କହି ବଳେଇ ବଳେଇ ଯୁବତୀମୂଷାଟିର ଭୟ ଭାଙ୍ଗି ପାଖକୁ ଡ଼ାକିନେଲା । ବାଟ ପୂର୍ଣ୍ଣ ବନ୍ଦ ହୋଇଗଲା । ଅଧା ଅନ୍ଧାର ଅଧା ଆଲୋକରେ ସେ ଉପରେ ଦେଖିଲା ହଜାର ହଜାର ଅଗଣିତ ନିଦ୍ରାଳୁ ମହୁକ ପରସ୍ପର ଉପରେ ଲେଶି ଲେପଟି ରହିଛନ୍ତି । ଅଧିକରେ ସେ ଯେତେବେଳେ ନିଶ ହଲେଇ ମୁଣ୍ଡ ଟେକି ତାକୁ ଚାହୁଁଛି, ସେତେବେଳେ ମହୁକମାନେ ଆହୁରି ଉପରକୁ ଘୁଞ୍ଚି ଯାଉଛନ୍ତି । ମୂଷା ଖୁସୀ । ସେ କ୍ଷୁଧାରେ ବିକଳ ହୋଇ ପଛ ଦୁଇ ଗୋଡ଼ରେ ବସି ପଡ଼ିଲା ଓ ଆଗ ଦୁଇଗୋଡ଼ ଉପରକୁ ବଢ଼ାଇ ଧୀରେ ଧୀରେ ବୋହି ଆସୁଥିବା ମହୁ ଖାଇ ମୋହିତ ହେଲା । ସେ ମୁହଁ ବଢ଼ାଇ ମହୁ ଓ ମହୁପିଠା ଖାଇଲା ଓ ତା ସଙ୍ଗିନୀକୁ ଖୁଆଇଲା । ଆହୁରି ଖାଇବାକୁ ମନ । ତେଣୁ ତାର ଲୋଭ ବଢ଼ିଲା ।

ସେ ମୋହଗ୍ରସ୍ତ ହୋଇଗଲା ଓ ଶତ୍ରୁ ମହୁକ-ଶକ୍ତି କଥା ଭୁଲିଗଲା । ଫେଣାକୁ ଆଶ୍ରୟ କରି ଠିଆ ହୋଇ ହାତ ବଢ଼େଇ ଅସଲି ମହୁଭାଣ୍ଡ ଖୋଜିବାରେ ଲାଗିଲା । ଦୈବାତ୍ ତାର ହାତ (ଆଗଗୋଡ଼) ଅଙ୍ଗୁଳି ରାଣୀଙ୍କ ପାର୍ଶ୍ୱ ଅଞ୍ଚଳ ଛୁଇଁଦେଲା । ଏହା ରାଣୀଙ୍କ ଅପାର ମହିମା ପ୍ରତି ସ୍ପର୍ଦ୍ଧା ପ୍ରକାଶ କଲା । କୁହୁକ ପରି ସଙ୍ଗେ ସଙ୍ଗେ ସମଗ୍ର ମହଲ ମଧ୍ୟରେ ଏକ ସଶବ୍ଦ ସ୍ପନ୍ଦନ ଖେଳିଗଲା । ହଜାର ହଜାର କଟୁଆଳ ମହୁକ ମୂଷାର ନାକ, ଆଖି, ମୁଣ୍ଡ, ପେଟ ପାଖ, ପିଠି, ଗୋଡ଼, ସବୁଆଡ଼େ ମାଡ଼ିଯାଇ ନାହୁଡ଼ ଖେଞ୍ଚିଦେଲେ ଓ ତା' ମଧ୍ୟରେ ଉତ୍କଟ ବିଷ ନିକ୍ଷେପିଦେଲେ । ତତ୍‌କ୍ଷଣାତ୍ ମୂଷାର ଶରୀରରେ ପିହୁଳାରୋଗ ଭଳି ଭୟଙ୍କର ଆକୁଞ୍ଚନ ହେଲା ଓ ସେ ଅଶକ୍ତ ହୋଇଗଲା । ତଥାପି ଦ୍ୱାର ଆଡ଼କୁ ତିନି ବା ଚାରି ସେଣ୍ଟିମିଟର ଘୁଷୁରି ଗଲା । ତା ଦେହ ଏକ ପିନ୍-କୁଶନ୍ ପରି ହୋଇଥାଏ । ମୁଣ୍ଡରେ ଧଳା ରଙ୍ଗର ବିଷ-ଟୋପି ପିନ୍ଧା ନାହୁଡ଼ୀ ବର୍ଚ୍ଛା ଦେହ ସାରା ଲାଗିଥାଏ । ସେ ଘୁଷୁରି ଘୁଷୁରି ଦ୍ୱାର ଦେଇ ବାହାରି ଆସି ପାରିଥାନ୍ତା । ମାତ୍ର ତାର ସଙ୍ଗିନୀ ମଧ

ନାହୁଡ଼ ମାଡ଼ ଖାଇ ବିରକ୍ତ ଓ କ୍ରୁଦ୍ଧ ହୋଇ ଯାଇଥିଲା । ସେ ପ୍ରାଣପଣେ ବାହାରକୁ ଆସୁଁ ଆସୁଁ ମୂଷାଠୁଁ ଠେସ ପାଇ ରାଗରେ ଜଳି ଗଲା । ସେଇ ଯୁବତୀ ମୂଷିକାଟି ପାରୁ ପର୍ଯ୍ୟନ୍ତ ବଳ ଖଟେଇ ଅଣ୍ଡିରା ମୂଷାଟିକୁ ନାତ ମାରିଲା । ଚଟାଣ ଉପରେ ପଡ଼ିଯାଇଥିବା ମହୁକମାନଙ୍କ ଉପରେ ମୂଷାଟି ଗଡ଼ିଗଲା । ସେତେବେଳେ ସିଏ ଶେଷ ଆକ୍ରମଣର ନିଶାଣ ହେଲା । ସେ ହାମୁଡ଼େଇ ପଡ଼ି ମରିଗଲା । ମହଲ ଚଟାଣ ଉପରେ ଏକ ଶବ ପଡ଼ିରହିଲା ରାତିସାରା ।

ପରଦିନ ସକାଳେ ଉଜ୍ଜ୍ୱଳ ଖରା ହେଲା । ତାତି ବଢ଼ିଲା । ମହୁକମାନେ ବହୁ ସଂଖ୍ୟାରେ ବାହାରି ପଡ଼ି ବାନ୍ଧେଣୀ ଦ୍ରବ୍ୟ ସଂଗ୍ରହପାଇଁ ଚାଲିଗଲେ ଓ ବିପୁଳ ପରିମାଣର ବାନ୍ଧେଣୀ ଅଠା ଘେନି ଆସିଲେ । ସେଥିରେ କିଛି ପୁରୁଣା ମହଣ ମିଶେଇ ମଲାମୂଷା ଉପରେ ଗୋଟିଏ ଈଷତ୍ ସ୍ୱଚ୍ଛ ବୃହଦାକାର କବରଖାନା ବନେଇଦେଲେ । ତେଣୁ ମୂଷା-ଶବଟିର କ୍ଷୟ ଏବଂ ମୃତ୍ୟୁବାର୍ତ୍ତା-ବାହକ ପୂତିଗନ୍ଧ-ପ୍ରସାରଣ ବନ୍ଦ ହୋଇଗଲା । ଏବେ ବି ସେହି ସୁନ୍ଦର ଶବ-ମନ୍ଦିର ଆମ ଆଲୋଚନାର ମହୁମହଲ ମଧ୍ୟରେ ବିରାଜିତ । କେତେଥର ସେଥିରେ ଫାଟ ଦେଖା ଦେଇଛି; ହେଲେ ତାହାକୁ ମରାମତି କରି ଦିଆଯାଇଛି । ତା ଭିତରେ ମୂଷାର ଶବ ମିଶର ଦେଶର ମମି ଭଳି ଶୋଇଥିବା ଅବସ୍ଥାରେ ତ୍ରୁଟିହୀନ ରହିଛି । ତା' ନ ହୋଇଥିଲେ ଯେଉଁ ମୂଷା ଜୀଅନ୍ତା ଭାବେ ମହୁକଙ୍କର ବିଶେଷ କ୍ଷତି କରିପାରି ନଥିଲା, ସେ ମରିବା ପରେ ସେଠି ପଚି ସଢ଼ି ଦାରୁଣ ଦୁର୍ଗତି ଆଣି ଦେଇପାରିଥାନ୍ତା ।

## ମହୁକର ବାନ୍ଧବ

ମହୁ କରିପାରୁଥିବା ମହୁକର ଅନେକ ବାନ୍ଧବ ଆମ ଦେଶରେ ଅଛନ୍ତି ଓ ଅନ୍ୟାନ୍ୟ ବିଦେଶୀ ରାଜ୍ୟରେ ଅଛନ୍ତି । ରଙ୍ଗରେ ବିଭିନ୍ନ, ଆକାରରେ ବିଭିନ୍ନ । ସେମାନଙ୍କ ଘର କରିବା ଓ ଘର କରଣାରେ ତଫାତ୍ । କେତେକଙ୍କର ରଙ୍ଗ ଧୂସର, ଆଉ କିଏ କଳା, ଆଉ କାହାର ରଙ୍ଗ ହଳଦିଆ ବାଦାମୀ । କିଏ ସରୁଆ ଲମ୍ବା, ପୁଣି କିଏ ମୋଟା ପେଟା । କିଏ ଡାଳ ଭିତରେ ବିଲ ଖୋଳି ରହେ ତ ଆଉ କିଏ ମାଟି ଭିତରେ ଗାତ କରି ରହେ । କିଏ କାଠଗୁଣ୍ଡରେ ଘର କରେ, କିଏ ମାଟି କାଦୁଅରେ ବା କିଏ ପତର କାଟି ଟିକି ଟିକି କରି ସେଇଥିରେ ଘର ରଚନା କରେ । ଆମ ଭିତରେ ଯେପରି ବଢ଼େଇ, କୁମ୍ଭାର ଅଛନ୍ତି, ମହୁକମାନଙ୍କ ମଧ୍ୟରେ ବି ବଢ଼େଇ କୁମ୍ଭାର ଅଛନ୍ତି । ସେ ସମସ୍ତଙ୍କ ଗଠନ ଓ ଘରକରଣା ବର୍ଣ୍ଣନା କରିବାପାଇଁ ବଡ଼ ଗ୍ରନ୍ଥ ଲେଖିବାକୁ ହେବ । ସେ ସବୁ କଥା ଥାଉ । ଏଠାରେ ଆମେ ଦେଖୁଥିବା କେତେକ ମହୁକଙ୍କ କଥା ଆଲେଚନା କରିବା ।

**ବାଘୁଆ ମହୁକ :** ପ୍ରଥମେ ବାଘୁଆ ମହୁକଙ୍କ କଥା ପଢ଼ୁ । ସେମାନେ

ସମତଳ ଅଞ୍ଚଳ ତଥା ପାହାଡ଼ ଅଞ୍ଚଳରେ ରହନ୍ତି । ତାଙ୍କ ମହଲ ବିଚିତ୍ର । ମୁକୁଳା ଜାଗାରେ ସେମାନେ ତାଙ୍କ ମହଲ ଗଢ଼ନ୍ତି । ଉପରେ କିଛି ଆଶ୍ରୟ ଥିଲେ ହେଲା । ଉପର ଛାତରୁ ତଳକୁ ଓହଳେଇ ତାଙ୍କ ମହଲ ଝୁଲି ରହିଥାଏ । ତାଙ୍କ ମହଲରେ ମାତ୍ର ଗୋଟିଏ ଫେଣା । ସେଇଟି ଖୁବ୍ ବୃହଦାକାର । ଏପଟୁ ସେପଟ ଓସାରରେ ଏକ ମିଟରରୁ ଦୁଇ ମିଟର ପର୍ଯ୍ୟନ୍ତ ହୋଇଥାଏ । ଉପରୁ ତଳକୁ ଲମ୍ବ ଅଧ ମିଟରରୁ ଏକ ମିଟର ଯାଏ ହୁଏ । ପାହାଡ଼ରେ ପଦାକୁ ବାହାରି ରହିଥିବା ପଥର ତଳେ, ସହରର ଉଚ୍ଚ କୋଠାର ଅବ୍ୟବହୃତ କୋଠରି ଛାତ ବା ଉଚ୍ଚ ପାଣିଟାଙ୍କି ତଳେ ସେମାନେ ମହଲ ଗଢ଼ନ୍ତି । ଅଥବା ଉଚ୍ଚ ଉଚ୍ଚ ଦ୍ରୁମ, ଯଥା: ବର, ଅଶ୍ୱତ୍ଥ, ଶିମିଳି, ଆମ୍ବ ବା ଜାମୁ ଗଛ ମୋଟା ଡାଳ ତଳେ ତାଙ୍କ ମହଲ ଗଢ଼ିଉଠେ । ମହଲ ଗଢୁଁ ଗଢୁଁ ତାହାର ମୋଟ ଡାଳର ମୋଟକୁ ବଳି ଗଲେ, ବର୍ଷାପାଣି, ଝଞ୍ଜାପବନ, ତାତି ବା ହେମାଳ ବାଜି ମହଲର କ୍ଷତି ହୁଏ । ତା'ହେଲେ ସେମାନେ ତୁରନ୍ତ ସେଠୁଁ ମହଲ ଛାଡ଼ି ଅନ୍ୟତ୍ର ଉଡ଼ିଯାଆନ୍ତି ଓ ନୂଆ ମହଲ ବସାନ୍ତି । ଗୋଟିଏ ଗୋଟିଏ ସ୍ଥାନରେ ସୁବିଧା ହେଲେ ସେମାନେ ଡଜନ ଡଜନ ମହଲ ଗଢ଼ିଥାନ୍ତି । ଏମାନଙ୍କ ବୈଜ୍ଞାନିକ ନାମ ହେଉଛି ଆପିସ୍ ଡର୍‌ସାଟା ।

ପତଳା ବାଦାମୀ ରଙ୍ଗର ଶ୍ରମିକମାନଙ୍କ ଲମ୍ବା ୧୭-୧୮ ସେଣ୍ଟିମିଟର । ତାଙ୍କ ଜିଭ ଲମ୍ବ ବି ଅଧିକ; ପ୍ରାୟ ୬.୭ ମିଲିମିଟର । ରାଣୀ ଶ୍ରମିକଙ୍କଠୁଁ ଅଧିକ ଲମ୍ବ ଓ ମୋଟା । ରଙ୍ଗରେ ସେମାନେ ଗାଢ଼ ବାଦାମୀ । ନାଗର, ପ୍ରାୟ ଶ୍ରମିକଙ୍କ ଆକାରର, ମାତ୍ର ରଙ୍ଗରେ କଳା, ହେଲେ ବି ଦେଖିବାକୁ ସୁନ୍ଦର ।

ଏହି ଜାତିର ମହୁକମାନେ ଖୁବ୍ କର୍ମଠ । ସେମାନଙ୍କ ଦିନ ଘଣ୍ଟାଏ ଆଗରୁ ଆରମ୍ଭ ହୁଏ ଏବଂ ଘଣ୍ଟାଏ ପରେ ଶେଷ ହୁଏ । ତେଣୁ ସେମାନେ ଅଧିକ ମହୁ ଓ ମହୁପିଠା ପ୍ରସ୍ତୁତ କରନ୍ତି । ମଧୁ ଉଚ୍ଛୁଳା ବେଳରେ ଦୁଇ ବା ତିନି ଥର ମହୁ ସେହି ମହଲରୁ ଅଭିଜ୍ଞ ମହୁ-ସଂଗ୍ରାହକମାନେ ଦଶ ବାର କେଜି ମହୁ ଥରକେ ଲୁଣ୍ଠି ନିଅନ୍ତି । ବର୍ଷକୁ ପ୍ରାୟ ପଚିଶେ ବା ତିରିଶ କେଜି ମହୁ । ଏହି ମହୁମହଲ ଭାଙ୍ଗିବା ବଡ଼ ବିପଦପୂର୍ଣ୍ଣ କାମ । ବାଘରା ମହୁକମାନଙ୍କ ନାହୁଡ଼ ବଡ଼ ବଡ଼ ଓ ତୀବ୍ର ବିଷଯୁକ୍ତ । ତାଙ୍କ ସ୍ୱଭାବ ପୁଣି ବଡ଼ ହିଂସ୍ର । ସହଜରେ ରାଗିଯାଇ ସମସ୍ତେ ଏକଜୁଟ ହୋଇ ଶତ୍ରୁ ମଣିଷ ବା ପଶୁଙ୍କୁ ଆକ୍ରମଣ କରନ୍ତି ଓ ଅନେକ କ୍ଷେତ୍ରରେ ମାରିଦିଅନ୍ତି । ରାଗିଗଲେ ଅନେକ ଦୂର ପର୍ଯ୍ୟନ୍ତ ସେମାନେ ଶତ୍ରୁକୁ ଗୋଡ଼େଇ ଥାନ୍ତି । ପାଣି ଭିତରେ ବୁଡ଼ିଲେ ବି ରକ୍ଷା ମିଳେ ନାହିଁ । କାରଣ ବୁଡ଼ିବା ଥାନରେ ସୋମନେ ଉଡ଼ି ବୁଲୁଥାନ୍ତି ଓ ଅପେକ୍ଷା କରିଥାନ୍ତି । ପାଣି ଭିତରୁ ବାହାରିବାକ୍ଷଣି ସେମାନେ ନାହୁଡ଼ ଆକ୍ରମଣ କରି ଚେତା ବୁଡ଼େଇ ଦିଅନ୍ତି । ଭୀଷଣ

ହିଂସ୍ର ଭାବ ଯୋଗୁଁ ତାକୁ 'ବାଘରା' ବୋଲାଯାଏ । ତେବେ ସେମାନେ ଧୂଆଁକୁ ଭାରି ଡରନ୍ତି । ଅଭିଜ୍ଞ ସଂଗ୍ରାହକମାନେ ସଞ୍ଜ ପହରରେ ମହୁମହଲ ତଳେ ପ୍ରଚୁର ଧୂଆଁକରି ମୁଣ୍ଡ, ମୁହଁ ଓ ଦେହକୁ ଲୁଗାରେ ଘୋଡ଼େଇ ବସିରହନ୍ତି । ମହୁକମାନେ ପଳେଇଗଲେ ସେମାନେ ଫେଣା ମୂଳ ବାହାରେ ଥିବା ମହୁ-କୋଷ ଗୁଡ଼ିକ କାଟି ନେଇଯାଆନ୍ତି । ଶିମିଳିପାଳ ଅଞ୍ଚଳରେ ରହୁଥିବା ଖଡ଼ିଆ ଆଦିବାସୀମାନେ ବାଘୁଆ ମହୁମହଲ ଭାଙ୍ଗି ମହୁ ସଂଗ୍ରହ କରିବାରେ ବିଶେଷ ଧୂର୍ତ୍ତ । ଏଇ ବାଘୁଆ ମହୁକକୁ ବାଡ଼ି ବଗିଚାରେ ବାକ୍ସ ମଧ୍ୟରେ ରଖି ବଢ଼େଇ ହୁଏ ନାହିଁ । ସେମାନେ ପଳେଇ ଯା'ନ୍ତି ।



**ହେଙ୍ଗୁଲା ମହୁକ :** ଏମାନେ ଦେଖିବାକୁ ବାଘରାଙ୍କ ପରି ଏବଂ ଏମାନଙ୍କର ନାହୁଡ଼ ଅଛି । ଏମାନେ ମଧ୍ୟ ଉଚ୍ଚ ବୃକ୍ଷଶାଖା ବା କାରବାର ହେଉନଥିବା ଘରଛାତ ତଳେ ଫେଣା ବାନ୍ଧନ୍ତି । ଫେଣା ମାତ୍ର ଗୋଟିଏ, ଫେଣାର ରଙ୍ଗ ଖୁବ୍ ଧଫେଦ୍ । ବୋଧହୁଏ ଏମାନେ ବାଘୁଆ ମହୁକ ଜାତିର । କଟକ ଜିଲ୍ଲାର ମହାନଦୀ ତ୍ରିକୋଣ ଅଞ୍ଚଳରେ ହେଙ୍ଗୁଲା ନାମ ବିଶେଷ ବ୍ୟବହୃତ ।

**ସାତଫେଣିଆ ମହୁକ :** ବାଘୁଆଙ୍କ ତଳକୁ ଆକାରରେ ସାତଫେଣିଆଙ୍କ ସ୍ଥାନ । ଏମାନଙ୍କର ମଧ୍ୟ ନାହୁଡ଼ ଅଛି । ହେଲେ ଏମାନଙ୍କ ଦଂଶନ ବାଘରାଙ୍କ ଦଂଶନ ପରି କଷ୍ଟପ୍ରଦ ନୁହେଁ । ଏମାନେ ଏକତ୍ର ବହୁ ଫେଣା ବିଶିଷ୍ଟ ଚକ୍ର ବା ମହଲ ଗଠନ କରନ୍ତି । ଏମାନେ ବୃକ୍ଷ କୋଟରରେ ବା ଗୁହା ମଧ୍ୟରେ ମହଲ ଗଠନ କରନ୍ତି । ମହଲ ମଧ୍ୟରେ ଫେଣା ଅନେକ; ଫେଣାଗୁଡ଼ିକ ପତଳା ପତଳା ଏବଂ ବାଘରାଙ୍କ ଫେଣା ଅପେକ୍ଷା ଲମ୍ବରେ ମଧ୍ୟ ଛୋଟ ଛୋଟ ।

ମହଲରେ ଗୋଟିଏ ଦ୍ୱାର । ଦ୍ୱାର ଯତ୍ନରେ କରାଯାଇଥାଏ । ଥଣ୍ଡା ଜାଗାରେ ଦ୍ୱାର ଆଗରେ ଫେଣାଗୁଡ଼ିକ ପଛକୁ ପଛ ଝୁଲୁଥାଏ ଓ ଉଷ୍ଣ ଜାଗାରେ ଦ୍ୱାର ଲାଇନ୍‌ର ସମାନ୍ତରାଳ ହୋଇ ସବୁ ଫେଣା ଗଠିତ ହୋଇଥାଏ । ତଦ୍ୱାରା ମହଲକୁ ସମଶୀତୋଷ୍ଣ ରଖିବା ସୁବିଧାଜନକ ହୁଏ ।

ମହଲ ମଧ୍ୟରେ ଯେତୋଟି ଫେଣା ଥାଉ ପଛେ ରାଣୀମା ଗୋଟିଏ । ସେହି ଏକୁଟିଆ ସବୁ ଫେଣା ନିୟନ୍ତ୍ରଣ କରେ । ଭାରତର ବିଭିନ୍ନ ଅଞ୍ଚଳରେ ବାସକରୁଥିବା ସାତେଫେଣିଆ ମହୁକ ସମ୍ପୂର୍ଣ୍ଣଭାବେ ସମାନ ନୁହନ୍ତି । ଜାତି ଏକ, ମାତ୍ର କିସମ ସ୍ୱତନ୍ତ୍ର; ବିଶେଷତଃ ଆକାର ଓ ରଙ୍ଗରେ । ପାହାଡ଼ିଆ ଅଞ୍ଚଳର ମହୁକର ଆକାର ବଡ଼ ଓ ରଙ୍ଗ କଳାମିଶା ହଳଦିଆ; ମାତ୍ର ସମତଳ ଅଞ୍ଚଳର ମହୁକର ଆକାର ଅପେକ୍ଷାକୃତ ସାନ ଓ ରଙ୍ଗ ଗଭୀର ହଳଦିଆ ।

ଏହି ଜାତିର ମହୁକର ସ୍ୱଭାବ ଉତ୍ତମ ଓ ମୃଦୁ । ଦଂଶନ ତୀବ୍ର ନୁହେଁ । ଭାରି କର୍ମଠ । ମହଲ ବନେଇବା, ମହଲ ଭିତରେ ଫେଣାମାନ ଗଢ଼ିବା, ତହିଁରେ ଯଥାସ୍ଥାନରେ ମହୁ ଓ କେଶର ସମ୍ପାଦିବା, ଫୁଲରୁ ମଧୁ ଓ ପରାଗ ସଂଗ୍ରହ କରିବା କାମ ତରତରରେ କରନ୍ତି । ରାଣୀମହୁକ ଦିନକେ ହଜାରେ ବା ବାରଶହ ଅଣ୍ଡା ଦେଇଥାଏ ଏବଂ ସେବିକାମାନେ ଯଥାରୀତି ସେମାନଙ୍କ ଯତ୍ନ ନେଇ ବଢ଼ାନ୍ତି । ତେଣୁ ଏହି ମହୁକକୁ ମଣିଷ ଯତ୍ନରେ ବାକ୍ସରେ ରଖି ବଢ଼ାନ୍ତି । ଏହିମାନେ ପୋଷା ମାନନ୍ତି । ଏହିମାନେ ପୋଷା ମହୁକ । ଏମାନଙ୍କଠାରୁ ବହୁ ମହୁ ଆମଦାନୀ ହୁଏ । ଏମାନଙ୍କୁ ବୈଜ୍ଞାନିକ ଭାଷାରେ 'ଆପିସ୍ ଇଣ୍ଡିକା' ବୋଲାଯାଏ । ମୂଳରୁ ସେମାନଙ୍କ କଥା ବିଶଦ ଆଲୋଚିତ ହୋଇଛି ।

**ଡାଳି ମହୁକ:** ଆକାରରେ ମାଛି ପରି ଛୋଟ ଛୋଟ ଏହି ମହୁକମାନେ ବୁଦାଳିଆ ଗଛର ଡାଳରେ, ଘାସବୁଦା ମଧ୍ୟରେ ଛୋଟ ଛୋଟ ଫେଣା ବାନ୍ଧନ୍ତି । ଗୋଟିଏ ଫେଣାରେ ଗୋଟିଏ ରାଣୀ । ତେଣୁ ଗୋଟିଏ ଫେଣା ଗୋଟିଏ ମହଲ । ଏମାନଙ୍କର ପୂର୍ଣ୍ଣ ବିକସିତ ବିଷାକ୍ତ ନାହୁଡ଼ ନାହିଁ । ଡାଳରେ ଫେଣା ବାନ୍ଧିଲେ ତାହା ଛୋଟ ବିଞ୍ଚଣି ଆକାର-ବିଶିଷ୍ଟ ହୁଏ । ତେଣୁ ଅନେକେ ଭାବନ୍ତି ଯେ, ସେମାନେ ସ୍ୱତନ୍ତ୍ର ଜାତିର ମହୁକ । ସେମାନଙ୍କୁ ତେଣୁ 'ବିଞ୍ଚଣି ମହୁକ' ନାମ ଦିଅନ୍ତି । ପ୍ରକୃତରେ ଉଭୟ ସମାନ ଏକ-ଜାତୀୟ ।

'ଡାଳିମହୁକ' ମୁଖ୍ୟତଃ ସମତଳ ଅଞ୍ଚଳରେ ବାସ କରନ୍ତି । ସମୁଦ୍ର ପତନ ଠାରୁ ୪୫୦ ମିଟର ଉଚ୍ଚ ଉପରକୁ ଏମାନେ ରହିପାରନ୍ତି ନାହିଁ । ଏମାନେ ପାଞ୍ଚ ଛ' ମାସରେ ଫେଣା ଛାଡ଼ି ଅନ୍ୟତ୍ର ପଳାନ୍ତି । ଏକା ଫେଣାରେ ଅନେକ ଦିନ ରହନ୍ତି ନାହିଁ । ଫେଣା ମୂଳରେ ମହୁ ସଞ୍ଚୟ କରନ୍ତି । ତେବେ ଫେଣାଟିରେ ବେଶୀ ମହୁ ନ ଥାଏ । ମହୁକ ଛୋଟ, ଫେଣା ଛୋଟ, ତେଣୁ ମହୁ ବି ଅଳ୍ପ । ହେଲେ ମହୁର ଗୁଣ ବଢ଼ିଆ । ଔଷଧରେ ବ୍ୟବହାର କରିବାକୁ ଅନେକେ ପସନ୍ଦ କରନ୍ତି । ବରକୋଳି ବୁଦାମାନଙ୍କରେ ବସାବାନ୍ଧି ଏମାନେ ରୁହନ୍ତି ଓ କୋଳିମହୁ ସମ୍ପାଦନ୍ତି । ଏହି ମହୁର ସୁବାସ ବି ସଭିଙ୍କ ପସନ୍ଦର ଚିଜ । ଏମାନଙ୍କ ବୈଜ୍ଞାନିକ ନାମ 'ଆପିସ୍ ଫ୍ଲୋରୀ' । ସେମାନଙ୍କୁ ମଧ୍ୟ 'ବାମନ ମହୁକ' ବା 'ଛୋଟୀ ମକ୍ଷୀ' ବୋଲାଯାଏ ।

**ନିକିଟି ମହୁକ:** ଏମାନେ ଛୋଟ ମାଛିଠାରୁ ମଧ୍ୟ ଛୋଟ । ମହୁକମାନଙ୍କ ମଧ୍ୟରେ ସବୁଠୁଁ ଛୋଟ । କାନ୍ଥରେ ଥିବା ଗାତରେ, ଗଛର କ୍ଷୁଦ୍ର କୋରଡ଼ରେ



ଓ ପଥର ଫାଟରେ ଏମାନେ ଫେଣା ଗଢ଼ନ୍ତି । ଫେଣା ଛୋଟ ଛୋଟ । ମହୁକମାନେ ଦଂଶନ କରନ୍ତି ନାହିଁ, କାମୁଡ଼ନ୍ତି । ସେମାନଙ୍କର ନାହୁଡ଼ ନାହିଁ । କାମୁଡ଼ା ବି ବିଶେଷ ଜ୍ୱାଳା ଦିଏ ନାହିଁ ।

ନିକିଟି ମହୁକମାନେ ତାଙ୍କ ଛୁଆଙ୍କୁ ଖୁଆଇ ପିଆଇ ପାଳନ୍ତି ନାହିଁ । ଆଶ୍ଚର୍ଯ୍ୟର କଥା ଯେ, କୋଷ ମଧ୍ୟରେ ରାଣୀ ଅଣ୍ଡା ଦେଲାପରେ ସେବିକାମାନେ ତା ମଧ୍ୟରେ

ମହୁ ଭରିଦେଇ କୋଷ ଉପରେ ଢାଙ୍କୁଣୀ ଦେଇ ବନ୍ଦ କରିଦିଅନ୍ତି । ପ୍ରାୟ ଦୁଇମାସ ପରେ କୋଷର ମହୁ ଖାଇ ଶୂକ ବଢ଼ି ରୂପ ବଦଳାଇ ମହୁକ ହୋଇ ବାହାରେ । କାମରେ ଲାଗେ । ପ୍ରାୟ ଦୁଇ ସପ୍ତାହ ପରେ ମରିଯାଏ । ତାଙ୍କ ଫେଣାରେ ସାଧାରଣତଃ ଶହେ ଗ୍ରାମ ଓଜନର ମହୁ ଥାଏ । ମହୁକୋଷ ଏଣେତେଣେ ବୁଣି ହୋଇଥାଏ । ତେଣୁ ମହୁ ସଂଗ୍ରହ କରିବା ବଡ଼ କଠିନ କାମ ହୋଇଯାଏ । ତେବେ ତାଙ୍କ ଫେଣାର କୋଷ କାନ୍ଥମାନଙ୍କରୁ ଯେଉଁ ମହଣ ମିଳେ, ତାହାକୁ 'ଡାମର' ବୋଲାଯାଏ । ସେଥିରୁ ଭଲ ବାର୍ନିସ ତିଆରି କରାଯାଏ । ଡାମରକୁ ମଧ୍ୟ ବୋଇତମାନଙ୍କରେ ପଟା ପଟା ମଝିରେ ଅଠା ଭଳି ଲଗାଇ ଭିତରେ ପାଣି ପଶିବା ବନ୍ଦ କରି ଦିଆଯାଏ । ବଢ଼ିଆ କାମ କରେ । ଏମାନଙ୍କ ବୈଜ୍ଞାନିକ ନାମ ହେଉଛି ଟ୍ରାଇଗୋନା ଜାତି ।

**ଗୁଞ୍ଜନୀ ମହୁକ :** ଇଂରେଜୀରେ ଏମାନଙ୍କୁ 'ବମ୍ବଲ ବି' ବୋଲାଯାଏ । ଏହାର ଅର୍ଥ ମଧ୍ୟ ଗୁଞ୍ଜନୀ ମହୁକ । ଉଡ଼ିଲାବେଳେ ସେମାନେ ଉଚ୍ଚସ୍ୱରରେ ଗୁଞ୍ଜନ କରିଥାନ୍ତି । ଠିକ୍ ମହୁକ ପ୍ରଜାତି ଅନ୍ତର୍ଗତ ଏକ ଜାତି ଏମାନେ ନୁହଁନ୍ତି । ତଥାପି ଏମାନଙ୍କୁ ମହୁକ କୁହାଯାଏ । କାରଣ ଏମାନେ ବି ସାମାଜିକ ପତଙ୍ଗ, ମହୁ କିୟଦ୍ ପରିମାଣରେ କରନ୍ତି ଓ ଫୁଲରେ ପରାଗଣ ଘଟାଇଥାନ୍ତି । ମହୁକଙ୍କ ଜାତି ବାରେଇବା ସାଧାରଣ ଲୋକଙ୍କ ପାଇଁ ସହଜ ନୁହେଁ; ମାତ୍ର ଗୁଞ୍ଜନୀ ମହୁକଙ୍କୁ ସହଜରେ ଚିହ୍ନିହୁଏ । ଆକାରରେ ଏମାନେ ବଡ଼ ବଡ଼ । ଛୋଟ କଳା ଭଅଁର ଆକାରର । ହେଲେ ବେକରେ ହଳଦିଆ ବାଳ ଓ ପିଠି ପେଟରେ ସୁନେଲୀ ପଟି ଥିବାରୁ ଦେହ ଦେଖିବାକୁ ସୁନ୍ଦର । ଦେହ ବଳିଷ୍ଠ ଏବଂ କେଶବହୁଳ । ତାଙ୍କ ଶୁଣ୍ଢିକା ମହୁକ ଶୁଣ୍ଢିକା ଠାରୁ ଲମ୍ବରେ ବଡ଼ । ତେଣୁ କେତେକ ଲମ୍ବା ଫୁଲରୁ ମଧୁ ଶୋଷିବାରେ ଗୁଞ୍ଜନୀ ମହୁକ ବିଶେଷ ପାରିବାର । ତେବେ ଶୋରିଷ ଓ ରାଶି (ନାଇଜର) ଫୁଲରେ ଏମାନେ ଦେଖାଯାନ୍ତି ।

ଗୁଞ୍ଜନୀ ମହୁକ ଛୋଟ ଛୋଟ ଗୋଷ୍ଠୀରେ ରହନ୍ତି । ଗୋଷ୍ଠୀ ମଧ୍ୟରେ ମାତ୍ର କେଇଶହ ମହୁକ ଥା'ନ୍ତି । ପ୍ରାୟ ୫ ଶହରୁ ଅଧିକ ମହୁକ ଗୋଟିଏ ଗୋଷ୍ଠୀ ବା ମହଲରେ ନ ଥାନ୍ତି ।

ଶୀତ ଋତୁରେ ଖଟୁଣୀ ଓ ନାଗର ମହୁକମାନଙ୍କର ଦେହାନ୍ତ ହୋଇଯାଏ । ପୁରୁଣା ରାଣୀ ବି ମରିଯାଏ । କେବଳ ନୂତନ ରାଣୀ ମାଟିତଳେ ଗଭୀର ଗାତ ଭିତରେ ବା ଗଛର ଛୋଟ କୋଟର ମଧ୍ୟରେ, ଯେଉଁଠି ଥଣ୍ଡା ପବନ ଖୁର-ଧାର କାଟେ ନାହିଁ, ସେଇଠି ଛପି ରହେ । ସେତେବେଳକୁ ଅଣ୍ଡିରା ନାଗରଙ୍କ ଗହଣରେ

ରମଣ-ଉତ୍ସବ ଉଡ଼ାଣରେ ଭାଗ ନେଇଥାଏ ଏବଂ ସେ ଗୋଟିଏ ନାଗର କୋଳରେ ଧରାପଡ଼ି ମୈଥୁନ-କ୍ରୀଡ଼ାରେ ଭାଗ ନେଇଥାଏ । ରମଣକାଳରେ ନିଷେଚିତ ହୋଇ ସେ ତା'ର ଏକ ବିଶିଷ୍ଟ ଅଙ୍ଗରେ ନାଗରର ଶୁକ୍ରାଣୁସବୁ ଏକାଠି ଜମେଇ ରଖିଥାଏ ଜୀବନକାଳ ଅବଧି । ଆବଶ୍ୟକ ବେଳେ ଅଣ୍ଡାଣୁ ଓ ଶୁକ୍ରାଣୁ ଯୁଗ୍ମନ କରାଇ ଅଣ୍ଡା ପାରେ । ସେହି ଅଣ୍ଡାରୁ ଉତ୍ପନ୍ନ ଶୂକ ଖାଦ୍ୟ ଅନୁସାରେ ଅନୁର୍ବର ଶ୍ରମିକା ବା ଖଟୁଣୀ ହୁଏ ଅଥବା ଉର୍ବରା ରାଜକନ୍ୟା ହୁଏ ।



ବସନ୍ତ ଆଗମନରେ ରାଣୀ ନିଜ ଆଶ୍ରୟସ୍ଥଳରୁ ବାହାରି ମାଟି ଭିତରେ ପ୍ରଶସ୍ତ ପରିତ୍ୟକ୍ତ ମୂଷାଗାତ, ନେଉଳ ଗାତ ଆଦି ଆଗରୁ ଗଢ଼ା ହୋଇଥିବା ପୁର ମଧ୍ୟରେ ନିଜ ମହଲ ବସାଏ । ସେ ଛୋଟ ଛୋଟ ଖୁରି ବା ଟିପ ଆକାରର ମହଣ-କଟରା ତିଆରି କରେ । ଫୁଲରୁ ମଧୁ ଓ ପରାଗ ବୋହିଆଣି ସେଥିରେ ଭରିରଖେ । ତହିଁରେ ଖଟୁଣୀ ହେବା ଅଣ୍ଡା ଦେଇଦିଏ । ସେଥିରୁ ଖଟୁଣୀ ମହୁକ ବାହାରିଲେ ରାଣୀର କାମ ଭାର କମିଯାଏ । ତା'ର ଗୋଷ୍ଠୀ ବଢ଼େ । ଫୁଲରେ ପରାଗଣ କାମ ବି ବଢ଼ିଯାଏ ।

ଆକାର, ରଙ୍ଗ, ଫେଣା ଗଢ଼ଣ ଆଦିରେ ମହୁକମାନଙ୍କ ମଧ୍ୟରେ ବିଭେଦ ଅଛି । ସେହିପରି ଆପଣା ଆପଣା ମଧ୍ୟରେ ଯୋଗାଯୋଗ ସ୍ଥାପନା କରିବାରେ ତଫାତ୍ ଅଛି । କିଛିଟି ମହୁକ କେବଳ ଗୋଲେଇ ନାଚ କଥା ଜାଣନ୍ତି । ପେଟ ଦୋହଲା ନାଚ କଥା ଜାଣନ୍ତି ନାହିଁ । ଡାଳି ମହୁକ ଗୋଲେଇ ନାଚ ଜାଣନ୍ତି ଓ ସରଳ ପେଟ-ଦୋହଲା ନାଚ କରି ପାରନ୍ତି । ନାଚର ବେଗ ବଦଳାଇ ଦୂରତା ପ୍ରକାଶ କରିପାରନ୍ତି ନାହିଁ । ସାତଫେଣିଆ ଓ ବାଘୁଆ ମହୁକ ଏ ବିଷୟରେ ବିଶେଷ ପାରଗ । ଏଇ ଗୁଣରୁ ମଧ୍ୟ ତାଙ୍କ ଭିତରେ କ୍ରମବିକାଶ ଧାରା ପ୍ରକାଶ ପାଏ ।

## ମହୁ

ଅନେକ ଜାତିର ମହୁକ ଓ ଅନେକ ପ୍ରକାର ମହୁମହଲ କଥା କୁହାଗଲା । ସେସବୁ ଭିତରେ ସାଧାରଣ ମୂଳ କଥା ହେଉଛି ମହୁ । ଅନେକ ଫୁଲକୁ ଗୁନ୍ଥି ଗୋଟିଏ ମାଳା କରାଯାଏ । ଏହିପରି ଅନେକ ମାଳା ରଚନା କରେ ମାଳୀ । ସେସବୁ କେବଳ ପଟ ଯୋଗୁଁ ହୋଇଥାଏ । ଅଥଚ ପଟର କାମକୁ ଉଣା କରି କହନ୍ତି, "କୁସୁମ ପରଶେ ପଟ ନିସ୍ତରେ" । ତାହା ବଦଳରେ କହିବା ଉଚିତ ଯେ, "ପଟ ପରଶେ କୁସୁମ-ମର୍ଯ୍ୟାଦା ବଢ଼େ ।" ସେହିପରି ମହୁ ଯୋଗୁଁ ମହୁକ ବା ମହୁମହଲ କଥା ଆମେ ଆଲୋଚନା କରୁଁ ।

ମହୁ ଏକ ଅପୂର୍ବ ଦିବ୍ୟ ଦ୍ରବ୍ୟ । ଏହାର ଗୁଣ ଅଶେଷ । ସୁନ୍ଦର ସରସ ଏକ ମିଠା । ଖାଇବା ଚିଜ ଭିତରେ ମିଠାର ଆଦର ସବୁଠୁଁ ବେଶୀ । ଆମ ଘରକୁ କେହି ବନ୍ଧୁ ବା ଅତିଥି ଆସିଲେ ପ୍ରଥମେ ତାଙ୍କ ମୁଖ ମିଠା କରିବାକୁ ହୋଇଥାଏ । ସବୁ ମିଠା ଭିତରେ ମହୁର ସ୍ଥାନ ସଭା ଉପରେ । ଅବଶ୍ୟ ଆମେ କାହାକୁ ମହୁ ଦେଉନା, କାରଣ ଆମେ ସହଜରେ ମହୁ ପାଉନା । ଆଉ ବି ମିଠେଇ, ବୁନ୍ଦିଆ ବା ଖଜା ଭଳି ମହୁ କାରବାର ସହଜ ନୁହେଁ । ଏହା ଏକ ଅର୍ଦ୍ଧ ତରଳ ଅଠାଳିଆ ପଦାର୍ଥ । ଫୁଲର ମଧୁରସକୁ ମହୁକ ଶୋଷିନେଇ ନିଜ ଉଦରସ୍ଥ ମହୁଭାଣ୍ଡରେ ସାଇତି ରଖି ସେଥିରୁ ଅନେକ ଜଳ-ଅଂଶ ଶୁଖାଇ ଦିଅନ୍ତି ଓ ମଧୁ-ରସରେ ଥିବା ଚିନି ଭାଗକୁ ସନ୍ଧାରକ ବା ଏନ୍‌ଜାଇମ୍ ସାହାଯ୍ୟରେ ବଦଳେଇ ଦେଇ ମହୁରେ ପରିଣତ କରନ୍ତି । ସେଥିରେ କେତେକ ଫୁଲରୁ ମିଳିଥିବା ରଙ୍ଗ ମିଶି ରହିଥାଏ । ଅପପଚନ ପ୍ରତିରୋଧ କରିବା ସନ୍ଧାରକ ମଧ୍ୟ ମହୁରେ ମିଶିଥାଏ । ମଧୁ-ରସରେ ଅନେକ ପରିମାଣର ଖାଇବା ଚିନି ବା ଆଖୁ-ଚିନି ଥାଏ । ମହୁରେ ଅଧିକ ପରିମାଣରେ ଫଳଶର୍କରା ଓ ଦ୍ରାକ୍ଷା-ଶର୍କରା ଥାଏ । ମୋଟାମୋଟି ଭାବେ ମହୁରେ ଶତକଡ଼ା ୨୦ ଭାଗ ଜଳ, ୭୫ ଭାଗ ଫଳଶର୍କରା+ଦ୍ରାକ୍ଷା-ଶର୍କରା ଓ

୨ ଭାଗ ଚିନି ଥାଏ । ଆଉ ବଳକା ହେଉଛି ଖଣିଜ ପଦାର୍ଥ ଓ ଜୀବନିକା, ଅମ୍ଳ ଆଦି ଜୈବିକ ପଦାର୍ଥ । ଖଣିଜ ପଦାର୍ଥ ମଧ୍ୟରେ ମୁଖ୍ୟ ହେଉଛି : ଲୁହା, ତମ୍ବା, କାଲ୍‌ସିଅମ୍, ଗନ୍ଧକ, ଫସ୍‌ଫରସ୍ ଆଦି । ଜୀବନିକା ମଧ୍ୟରେ ପ୍ରଧାନ ହେଉଛି : ଜୀବନିକା କ, ଖ ଓ ଗ ।

ଖାଦ୍ୟଭାବରେ ମହୁ ଅତ୍ୟନ୍ତ ଉପାଦେୟ । ଏହା ପୁଷ୍ଟିକର; ମାତ୍ର ଏଥିରେ ପୁଷ୍ଟିସାର ପ୍ରୋଟିନ ନାହିଁ । ତେଣୁ ମହୁ, ଦୁଧ ଓ କମଳା-ରସର ମିଶ୍ରଣ ଏକ ସମ୍ପୂର୍ଣ୍ଣ ଖାଦ୍ୟ । ଶିଶୁ, ବୃଦ୍ଧ ଓ ରୋଗାକ୍ରାନ୍ତ ଅସମର୍ଥ ଲୋକଙ୍କ ପାଇଁ ଏହା ଖୁବ୍ ଉପଯୋଗୀ ଖାଦ୍ୟ । ଗ୍ଲୁକୋଜ ଯେପରି ତୁରନ୍ତ ଶକ୍ତି ଯୋଗାଇଦିଏ, ମହୁ ତାଠୁଁ ଅଧିକ କାମ କରେ । କ୍ରୀଡ଼ା-ପ୍ରତିଯୋଗିତାରେ ଭାଗ ନେଉଥିବା ଓ ଭାଗନେବା ପରେ ପରେ ଖେଳୁଆଡ଼ମାନେ ମହୁ (ଦୁଇ ଚା ଚାମଚ) ମିଶା ପାଣି ପିଇ ଲାଭ ପାଆନ୍ତି ।

ଯେଉଁ ଖାଦ୍ୟ ବା ପେୟରେ ମହୁ ମିଶେ, ତା'ର ମିଠା ଅଂଶ ନିଶ୍ଚୟ ବଢ଼ିଯାଏ । ଅଧିକରେ ତା'ର ସୁବାସ ଚମତ୍କାରଭାବେ ବଦଳିଯାଏ ଓ ବଢ଼ିଯାଏ । ମହୁର ସୁବାସ ସ୍ୱତନ୍ତ୍ର । ତାହା ଅନ୍ୟ କେଉଁଥିରୁ ମିଳେ ନାହିଁ ।

ଡାକ୍ତରୀ ଚିକିତ୍ସାରେ ବ୍ୟବହୃତ ଅନେକ ତରଳ ଔଷଧରେ ସୁରାସାର ମିଶି ରହିଥାଏ । ହୋମିଓପାଥି ଚିକିତ୍ସାରେ ସବୁ ଔଷଧ ଦୁଧ-ଶର୍କରାରେ ମିଶାଇ ଖିଆଯାଏ । ସେହିପରି ଅନେକ କବିରାଜୀ ଔଷଧକୁ ମହୁରେ ଘଷି ଖାଇବାକୁ ହୁଏ । ଘରୋଇ ଚିକିତ୍ସାରେ ମଧ୍ୟ ମହୁର ବ୍ୟବହାର ଅନେକ ।

ଧର୍ମ କର୍ମମାନଙ୍କରେ ମହୁର ବ୍ୟବହାର 'ନ ହେଲେ ନ ଚଳେ' ଅବସ୍ଥା । ସବୁ ପୂଜା, ଯଜ୍ଞରେ ମହୁ ଅବଶ୍ୟ ବ୍ୟବହୃତ ହୁଏ । ଅନ୍ୟ ଧର୍ମ, ଯଥା :— ଖ୍ରୀଷ୍ଟାନ, ଯିହୁ, ମୁସଲମାନ ଆଦି ଧର୍ମାନୁଷ୍ଠାନରେ ଏହା ମଧ୍ୟ ବ୍ୟବହୃତ ହୁଏ ।

ଏସବୁ ବ୍ୟତୀତ ଅନ୍ୟ କେତେକ ଅସାଧାରଣ ଉପାୟରେ ମହୁ ବ୍ୟବହୃତ ହୁଏ । ପଶ୍ଚିମ ଦେଶମାନଙ୍କରେ ସୁବାସିତ ମଦ ପ୍ରସ୍ତୁତ କରିବା ପାଇଁ ମହୁ ଲୋଡ଼ା ଯାଇଥାଏ । ଚମଡ଼ା ମସୃଣ ରଖିବା ପାଇଁ ମହୁ ମିଶାଇ ଲେପ ଗଠନ କରାଯାଏ । ଦୁହାଁଳୀ ଗାଈଙ୍କ ଦୁଧଦେବା, ଦୌଡ଼ରେ ଭାଗ ନେଉଥିବା ଘୋଡ଼ାଙ୍କ ଶକ୍ତି, କୁକୁଡ଼ାଙ୍କ ଓଜନ ଶୀଘ୍ର ବଢ଼େଇବା ପାଇଁ ମହୁ ବ୍ୟବହାର କରାଯାଏ । ଏପରିକି ଗଛମାନଙ୍କ ବିକାଶ ଓ ମୂଳ ଗଠନ ତୁରନ୍ତ କରିବାପାଇଁ ମହୁ ପ୍ରୟୋଜନ ହୁଏ ।

ମହୁକ-ସମାଜ ଅତ୍ୟନ୍ତ ସୁସଂଗଠିତ ଏବଂ ସ୍ୱୟଂକ୍ରିୟ ଗୋଷ୍ଠୀ । ମହୁମହଲର ସବୁ ସଭ୍ୟଙ୍କ ସହଯୋଗରେ ଏହା ନିୟନ୍ତ୍ରିତ ହୋଇଥାଏ । ବାହ୍ୟ ପରିବେଶରୁ

ମିଳୁଥିବା ଉତ୍ତେଜନା ଯୋଗୁଁ ଦେହ ମଧ୍ୟରେ ଚାଲିଥିବା କାମରେ ଅଦଳ ବଦଳ ହୋଇ ଏହି ନିୟନ୍ତ୍ରଣ ସମ୍ଭବ ହୁଏ । ସେଥିପାଇଁ ମହୁର ମାଧ୍ୟମ ଖୁବ୍ କାମ କରେ । କେତେ ଉଦାହରଣ ମଧ୍ୟରୁ ଗୋଟିଏ ଏଠାରେ ବିଚାର କରିବା ।

ମହୁମହଲରେ କେତେ କୋଷ ଗଢ଼ାଯିବ, ତାହା ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଘଟଣା । କୋଷ ଗଢ଼ିବାର ମୂଳ ଉପାଦାନ ହେଉଛି ମହଣ । ମହଣ ବାହାରେ କେଉଁଠି ମିଳେ ନାହିଁ । ତାହାକୁ ଯୁବା ମହୁକମାନେ ନିଜେ ନିଜେ ଗଢ଼ନ୍ତି । ମହୁକ ପେଟତଳେ ମହଣ ପ୍ରସ୍ତୁତକରିବା କଳମାନ ଅଛି । ସେହି କଳମାନଙ୍କରେ ମହଣ ତିଆରି ହୁଏ ।

ମଧୁ ଉଛୁଳା କାଳରେ ବହୁତ ମଧୁ ମିଳେ ଓ ସେଥିରୁ ବଳକା ମହୁ ହୁଏ । ବଳକା ମହୁ ସମ୍ପାଦି ରଖିବା ପାଇଁ ଅଧିକ କୋଷ ଲୋଡ଼ା, ଅଥଚ ଫାଙ୍କା କୋଷ ନାହିଁ । ତେଣୁ ଘରକରଣା ଶ୍ରମିକା ବା ଖଟୁଣୀ ମହୁକ ବଳକା ମହୁ ସମ୍ପାଦିବା କଥା, ସେମାନେ ତାହା କରିପାରନ୍ତି ନାହିଁ । ତାଙ୍କ ପେଟ ଭିତରେ ବଳକା ମହୁ ସଞ୍ଚିତ ହୋଇ, ପେଟକୁ ଟାଙ୍କ କରି ରହେ । ସେଥିରୁ କିଛି କିଛି ଶର୍କରା ତା ଦେହରେ ଚରିଯାଏ । ଯେତିକି ଶର୍କରା ତା'ର ଦୈନିକ ଆବଶ୍ୟକ ଶକ୍ତିପାଇଁ ଲୋଡ଼ା, ତାଠୁଁ ଅଧିକ ଶର୍କରା ତା ଦେହରେ ମାଡ଼ିଯାଏ । ସେହି ବଳକା ଶର୍କରା ମହୁକର ମହଣ ଗଠନକାରୀ ଗ୍ରନ୍ଥିରେ ଟିକି ଟିକି ମହଣ-ଖଣ୍ଡମାନଙ୍କରେ ପରିଣତ ହୋଇଯାଏ ।

ସେହି ମହଣ-ଖଣ୍ଡଗୁଡ଼ିକ ଗୋଟିଏ ଉପରେ ଗୋଟିଏ ରଖି କୋଷ-କାନ୍ଥ ଯୋଡ଼ାଯାଏ । କୋଷ ପ୍ରସ୍ତୁତ ହେଲେ ତା ଭିତରେ ମହୁ ସାଇତା ହୁଏ । ମହୁ ସାଇତା ପରେ କୋଷର ଟୋପିଟି ବି ମହଣରେ ହୁଏ ଓ ଉଭୟ ମହଣରେ ମୁଦି ଦିଆଯାଏ । ଏହି ପ୍ରକାରେ ମହଣ ତିଆରି, କୋଷ ଗଠନ ଓ ତହିଁରେ ମହୁ ସାଇତା ହେଲେ ଉଦ୍‌ବୃତ୍ତ ମହୁ ଶେଷ ହୋଇଯାଏ । ତେଣୁ ମହଣ ତିଆରି ମଧ୍ୟ ଆପେ ଆପେ ବନ୍ଦ ହୋଇଯାଏ । କାରଣ ବଳକା ମହୁ ଆଉ ନ ଥାଏ ।

ଆମେ କିପରି ମହୁ ବ୍ୟବହାର କରି ଉପକୃତ ହେବା, ତାହା ମନେରଖିବା ଉଚିତ । ମହୁ ପ୍ରକୃତିର ଏକ ଅନନ୍ୟ ସାଧାରଣ ଅନବଦ୍ୟ ଖାଦ୍ୟପଦାର୍ଥ । ଏହା ସୁସ୍ୱାଦୁ ଓ ଉପାଦେୟ । ଚର୍ମ, ପାକସ୍ଥଳୀ, ମାଂସପେଶୀ, ହୃତ୍‌ପିଣ୍ଡ ତଥା ମସ୍ତିଷ୍କ ଆଦି ସର୍ବାଙ୍ଗର ବିକାଶରେ ମହୁର ଅବଦାନ ଅଛି । ତେଣୁ ପ୍ରତିଦିନ ଅନ୍ତତଃ ପକ୍ଷେ ଚାମଚେ ମହୁ ଖାଅ । ବାଡ଼ିରେ ସୁବିଧା ଥିଲେ ଗ୍ରାମୋଦ୍ୟୋଗ ସଂସ୍ଥାରୁ ସାହାଯ୍ୟ ନେଇ ମହୁକ ବାକ୍ସରେ ମହୁକ ମହଲ ବଢ଼ାଅ ।

ମହୁମହଲ ବଢ଼ୁ, ମହୁକ ବଢ଼ନ୍ତୁ ଓ ମହୁ ପରିମାଣ ବଢ଼ୁ ।